# ହସକୁରୀ ଜହ୍ନ

(କିଶୋର ଉପନ୍ୟାସ)



ରଚନା : ଡକ୍ଟର କୃତ୍ତିବାସ ନାୟକ

ISBN No. : 81-87968-38-9

'ଅରୁଣ ତରୁଣ'

୬ଡି/୧୪୬୩, ସେକ୍ଟର-୧୦, ମର୍କତ ନଗର, କଟକ-୧୪

ଫୋନ : ୯୯୩୭୭୪୩୫୦୮

# ହସକୁରୀ ଜହ୍ନ

(ସଚିତ୍ର କିଶୋର ଉପନ୍ୟାସ)



*ରଚନା*


**ଡକ୍ଟର କୃତ୍ତିବାସ ନାୟକ**

ଆକାଶବାଣୀ, କଟକ



*ପ୍ରକାଶକ :*

**'ଅରୁଣ ତରୁଣ'**

୬ଡ଼ି/୧୪୬୩, ସେକ୍ଟର-୧୦

ମର୍କତ ନଗର, କଟକ-୧୪

ଫୋନ : ୯୯୩୭୭୪୩୫୦୮

*ପ୍ରଥମ ସଂସ୍କରଣ :* ୨୦୧୧

*ମୁଦ୍ରଣ :*

ଜଗନ୍ନାଥ ପ୍ରୋସେସ୍ ପ୍ରା. ଲିଃ.,

କଟକ -୨

*ମୂଲ୍ୟ :* ଟ. ୬୦/-




# HASAKURI JAHNA

(Novel for Adolescence)

*Written by :*


**Dr. Krutibas Nayak**



*Published by :*

*Arun Tarun*

6D/1463, Sector - 10

Markat Nagar, Cuttack-14

*First Edition :* **2011**

*Price :* ***Rs. 60.00***

# 'ହସକୁରୀ ଜହ୍ନ'
## ଉପନ୍ୟାସ ସଂପର୍କରେ ପଦେ....

ଡକ୍ଟର କୃତ୍ତିବାସ ନାୟକ ଆକାଶବାଣୀ କଟକର ଜଣେ ବରିଷ୍ଠ ଅଧିକାରୀ ହୋଇଥିଲେ ମଧ୍ୟ ସାହିତ୍ୟିକ ପ୍ରବୃତ୍ତିକୁ ବିଶେଷ ଭାବରେ ମେଣ୍ଟେଇଛନ୍ତି ଶିଶୁ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ । ସେ ଶିଶୁମାନଙ୍କ ପାଇଁ କବିତା, ଗଳ୍ପ, ନାଟକ ଇତ୍ୟାଦି ରଚନା କରି ବେଶ୍ ଆଦର ଲାଭ କରିଛନ୍ତି । ସେ ପୁଣି ପିଲାମାନଙ୍କ ପାଇଁ ରଚନା କରିଛନ୍ତି ଉପନ୍ୟାସ 'ହସକୁରୀ ଜହ୍ନ' । ଏହା ପ୍ରକୃତରେ କିଶୋରମାନଙ୍କ ପାଇଁ ଏକାନ୍ତ ଉପଯୋଗୀ ଉପନ୍ୟାସ ।

ଓଡ଼ିଆ ସାହିତ୍ୟରେ କିଶୋର-ଉପନ୍ୟାସ ସଂଖ୍ୟା ବହୁତ କମ୍ । ଏ' ଦିଗରେ ବିଭୂତି ପଟ୍ଟନାୟକ ପ୍ରଥମେ ପରୀକ୍ଷା କରି ସଫଳତା ଅର୍ଜନ କରିଥିଲେ । ଏବେ କୃତ୍ତିବାସ ବାବୁ ସେଦିଗରେ ଲେଖନୀ ଚାଳନା କରିଛନ୍ତି । ସେ ଏହି ଉପନ୍ୟାସରେ ଗୋଟିଏ ମୁଖ୍ୟ ସମସ୍ୟାକୁ ଗୁରୁତ୍ୱ ଦେଇଛନ୍ତି, ତାହା ହେଉଛି ନକ୍ସଲ୍ ସମସ୍ୟା-ମାଓବାଦୀ ସମସ୍ୟା । ଏହି ସମସ୍ୟା କୋରାପୁଟ, ମାଲକାନାଗିରି, କଳାହାଣ୍ଡି, କେନ୍ଦୁଝର ଓ ମୟୂରଭଞ୍ଜ ଆଦି ଅଂଚଳରେ ଗୁରୁତର ସଂକଟ ସୃଷ୍ଟି କରିଛି । ଆଦିବାସୀ ଅଂଚଳର କିଶୋର-ଯୁବକମାନେ ମାଓବାଦୀଙ୍କ ପ୍ରଲୋଭନରେ ପଡ଼ି ଏପରି ଏକ ଜୀବନ-ମରଣର ସଂକଟ ଭିତରକୁ ଟାଣି ହୋଇ ଯାଉଛନ୍ତି । ସେଥିରେ ପୁଣି କିଛି ଯୁବକ ଓ ଯୁବତୀଙ୍କୁ ଅପହରଣ କରି ନେଇ ମାଓବାଦୀ ହିଂସାକାଣ୍ଡରେ ସେମାନଙ୍କୁ ନିୟୋଜିତ କରା ଯାଉଛି । ଥରେ ସେହି ହିଂସାତ୍ମକ ପରିବେଶକୁ ଚାଲିଗଲା ପରେ ଆଉ ଫେରି ପାରୁ ନାହାନ୍ତି । ଏଣେ ସେମାନଙ୍କ ଭିତରେ ଦେଖା ଦେଉଛି, ମାନସିକ ସଂଘର୍ଷ । କେହି ସେଥିରୁ ମୁକ୍ତ ହେବାକୁ ଚାହିଁଲେ, ସେମାନଙ୍କୁ ହତ୍ୟା କରା ଯାଉଛି । ଏହି କିଶୋରମାନଙ୍କ ମଧ୍ୟରୁ ଅଧିକାଂଶ ଚାହାନ୍ତି ନାହିଁ ହିଂସାକାଣ୍ଡରେ ଲିପ୍ତ ହେବାକୁ । କୃତ୍ତିବାସ ବାବୁ ଉପଲବ୍ଧି କରିଛନ୍ତି କିଶୋରମାନଙ୍କର ହୃଦୟର ଭାବକୁ ଓ ମାନସିକ ସଂଘର୍ଷକୁ । ତାଙ୍କର ଉଦ୍ଦେଶ୍ୟ ଏହି କିଶୋରମାନଙ୍କ ଭିତରେ ମାନବିକ ଚେତନାର ଜାଗରଣ କରିବା । ଏହି ଉଦ୍ଦେଶ୍ୟ ତାଙ୍କର ସଫଳ ହୋଇଛି- ହସକୁରୀ ଜହ୍ନ ଉପନ୍ୟାସରେ ।

ଏହି ଉପନ୍ୟାସଟି ମାଓବାଦୀମାନଙ୍କର ଗଣହତ୍ୟା, ଉପଭୋଗ ଲାଳସା, ସରଳ ଆଦିବାସୀ ଯୁବକମାନଙ୍କୁ ଭୟ ଦେଖାଇ ଦଳଭୁକ୍ତ କରିବା, ମାଓବାଦୀ

ଆଦିବାସୀ ଯୁବକ ଯୁବତୀମାନଙ୍କ ଭିତରେ ମୁକ୍ତି ପାଇଁ ଆକାଂକ୍ଷା, ମାଓବାଦୀଙ୍କ ଲକ୍ଷ୍ୟଚ୍ୟୁତି ଆଦି ନାନା ବିଷୟକୁ ସୁନ୍ଦର ଭାବରେ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଉଚ୍ଚବର୍ଣ୍ଣ ଓ ଆଦିବାସୀ ମଧ୍ୟରେ ଥିବା ଭେଦଭାବକୁ ଦୂର କରିବା ପାଇଁ ହୋଇଯାଇଛି ଏକ କଳାତ୍ମକ ଆହ୍ୱାନ । ଏହା ଯେ କିଶୋର ପାଠକମାନଙ୍କ ପାଇଁ ଏକ ଉପାଦେୟ ପୁସ୍ତକ କହିବାରେ ଦ୍ୱିଧା ନାହିଁ ।

ବୈଷ୍ଣବ ଚରଣ ସାମଲ
ଅବସରପ୍ରାପ୍ତ ପ୍ରଫେସର,
ବିଶ୍ୱଭାରତୀ ଶାନ୍ତି ନିକେତନ

## ମୋ କଥା .....

ଓଡ଼ିଆ ପିଲାଙ୍କ ପାଇଁ ଉପନ୍ୟାସ ନାହିଁ କହିଲେ ଚଳେ । ହାତ ଗଣତି କେତେଜଣ ଔପନ୍ୟାସିକ ଏ'ଦିଗରେ ଅବଶ୍ୟ ଉଦ୍ୟମ କରିଛନ୍ତି । କିନ୍ତୁ ତାହା ଆମର ପିଲାଙ୍କ ଉପରେ ବିଶେଷ କିଛି ପ୍ରଭାବ ପକାଇ ପାରିନାହିଁ କିମ୍ବା ତାହା ଆଉ ବଜାରରେ ମିଳୁନାହିଁ ।

ବିଶିଷ୍ଟ ଲେଖକମାନଙ୍କ ମତ ଯେ, ପିଲାଙ୍କ ପାଇଁ ଗପ କିମ୍ବା ଉପନ୍ୟାସ ଲେଖିବା ସବୁଠାରୁ କଷ୍ଟସାଧ କାର୍ଯ୍ୟ । ତେଣୁ ଏ'ଦିଗରେ କଲମ ଚଳାଇବାକୁ ସେମାନେ କୁଣ୍ଠାବୋଧ କରନ୍ତି ।

୨୦୧୦ ମସିହାରୁ ଭାରତର କେନ୍ଦ୍ର ସାହିତ୍ୟ ଏକାଡେମୀ ଶିଶୁ ଓ କିଶୋର ସାହିତ୍ୟ ପାଇଁ ଏକ ଜାତୀୟ ପୁରସ୍କାର 'ବାଲ ସାହିତ୍ୟ ସମ୍ମାନ' ପ୍ରଦାନ ପାଇଁ ବ୍ୟବସ୍ଥା କରିଛନ୍ତି । ପ୍ରଥମଥର ପାଇଁ ଆୟୋଜିତ ଏହି ପ୍ରତିଯୋଗିତାରେ ମୋତେ ଜଣେ ବିଚାରକ ଭାବେ ଯୋଗଦେବାକୁ ସୁଯୋଗ ମିଳିଥିଲା । ସେଥିରେ ଗୋଟିଏ ବି ପିଲାଙ୍କ ପାଇଁ ଉପନ୍ୟାସ ନଥିଲା । ଅନ୍ୟ ଭାଷାରେ ପ୍ରସ୍ତୁତ ପୁସ୍ତକ ତୁଳନାରେ ଆମ ପିଲାଙ୍କ ପୁସ୍ତକ ଏତେ ଉତ୍ସାହପ୍ରଦ ନଥିଲା । ଏଥିପାଇଁ ଆମେ ଦୁଃଖ ପ୍ରକାଶ କଲୁ । ଯେଉଁମାନେ ପିଲାଙ୍କ ପାଇଁ କଲମ ଚଳାଉଛନ୍ତି, ସେମାନଙ୍କୁ ଏଇଠି ଅନୁରୋଧ କରିବି, ସେମାନେ ଏ'ଦିଗରେ ଅଧିକ ଯତ୍ନଶୀଳ ହୋଇ ଆମ ପିଲାଙ୍କ ସାହିତ୍ୟକୁ ସମୃଦ୍ଧ କରିବେ ।

–କୃତ୍ତିବାସ ନାୟକ

# ଏକ

ପଶ୍ଚିମ ଆକାଶରେ ଖଣ୍ଡିଆ ଜହ୍ନ ଅସ୍ତ ହୋଇଗଲା । ତାରାଗୁଡ଼ାକ ଚକ୍‌ଚକ୍ କରି ନିର୍ମଳ ଆକାଶରେ ହସିଲେଣି । ହଠାତ୍ ଦୁଲକାଏ ପବନ ଆସି ମହୁଲ ଗଛଟାକୁ ଜୋରରେ ହଲେଇ ଦେଇଗଲା । ସନିଆଁ ଚମକି ପଡ଼ିଲା । ଚାରିଆଡ଼କୁ ସେ ଆଖି ବୁଲେଇ ଆଣିଲା । କୁଡ଼ିଆ ଭିତରେ ଶୁକୁରୀବୁଢ଼ୀର ସୁଁ ସୁଁ କାନ୍ଦ ଶୁଭୁଥିଲା । ମନଟା ତା'ର ବିକଳ ହେଉଥିଲା । ସେ ଠିଆ ହୋଇ ପଡ଼ି ମହୁଲ ଗଛକୁ ଭଲକରି ନିରୀକ୍ଷଣ କଲା । ତା'ର ବିଶ୍ୱାସ ସେହି ମହୁଲ ଗଛରେ ଡୁମାମାନେ ରହନ୍ତି । ସେ ଭଲମନ୍ଦରେ ଆଗୁଆ ସୂଚନା ଦିଏ । ଏଇ ଗଛଟା ତା' ବାପା ଗୋସବାପା ଅମଳରୁ ଦାଣ୍ଡ ଦୁଆରେ ଠିଆ ହୋଇ ରହିଛି । ସେ ଶୁଣିଛି, ତା'ର ପୂର୍ବ ପୁରୁଷମାନେ ଦେହତ୍ୟାଗ କରି ଡୁମା ରୂପଧରି ଏଇ ଗଛରେ ରହିଛନ୍ତି । ଦରକାର ବେଳେ ସାହାଯ୍ୟ କରନ୍ତି । ସେଇଥିପାଇଁ ଶୁକୁରୀ ବୁଢ଼ୀ ଏଇ ଗଛକୁ ନିତି ମୁଣ୍ଡିଆ ମାରେ । ସନିଆଁ ଶିକାର କରିବାକୁ ଗଲେ, ଏଇ ଗଛରେ ଥିବା ପୂର୍ବ ମହୁଲ ଗଛରେ ପୁରୁଷ ଡୁମାମାନଙ୍କୁ ସ୍ମରଣ କରି ତା' ଧନୁତୀରକୁ ଛୁଆଇଁ ସାରି ବାହାରେ । ସେଇଥିପାଇଁ ତ ସେ କେବେ ଖାଲି ହାତରେ ଜଂଗଲରୁ ଫେରିନାହିଁ । ସବୁ ସେହି ଡୁମାମାନଙ୍କର ଆଶୀର୍ବାଦ । ତାଙ୍କରି ଆଶୀର୍ବାଦରୁ ତା' ପୁଅ ଆଶ୍ରମ ସ୍କୁଲରେ ରହି ଏତେ ପାଠ ପଢ଼ି ପାରିଥିଲା ।

ଆଉ ଦଲକାଏ ପବନରେ ତା' ଭାବନାର ଖିଅ ଛିଡ଼ିଗଲା । ଏଥର ସେ ଆଉ ବସି ରହି ପାରିଲା ନାହିଁ । ସେ ଦୌଡ଼ିଯାଇ ମହୁଲ ଗଛକୁ କୁଣ୍ଢେଇ ଧରି କହି ଚାଲିଲା,– 'ଡୁମା ମା' ପ୍ରଭୁ ! ମୋର ଏ' ବିପଦବେଳେ ତମେ ସାହାଯ୍ୟ କର । ଦେବତା ପରା ପୁଅଟାକୁ କିଏ ଭୁଲେଇକି ନେଇଗଲା । ତାକୁ ଫେରେଇ ଆଣ ମା' ପ୍ରୁ । ତା' ମାଆ ଶୁକୁରୀର ଅବସ୍ଥା ଯାହା ହେଲାଣି । ସେ ଆଉ ବଞ୍ଚିଲା ଭଳି ଲାଗୁନାହିଁ । ତାକୁ ବଞ୍ଚେଇ ଦିଅ ମା' ପ୍ରଭୁ । ଦୁଇଦିନ ହେଲା–

ସେ ଅନ୍ନଜଳ ଛୁଇଁ ନାହିଁ । ଖାଲି ତା' ପୁଅକୁ ଝୁରି ହେଉଛି । ମୋତେ ଟିକେ ଦୟାକର ମା' ପ୍ରୁ । ନହେଲେ ଶୁକୁରୀ ମରିଯିବ । ମୋର ଆଉ କିଏ ଅଛି ? ବଡ଼ପୁଅ ଧନୁଆଁ ଗତବର୍ଷ ଶିକାର କରିବାକୁ ଯାଇଥିଲା ଯେ– ଆଉ ଜଂଗଲରୁ ଫେରିଲା ନାହିଁ । ତାକୁ ଖୋଜି ଖୋଜି ଜଂଗଲ ଭିତରେ ଦେଖିଲି ତା'ର ଧନୁତୀର ଜାମାପଟା ସବୁ ଗୋଟାଏ ଗଛ ଉପରେ ଟଙ୍ଗା ହେଇଥିଲା । ଗାଆଁଲୋକ କହିଲେ– 'ସେ କୁଆଡ଼େ ଟଙ୍କା ଲୋଭରେ ମାଓବାଦୀ ଦଳରେ ମିଶି ଯାଇଛି । ସତ କି ମିଛ କିଛି ଜାଣି ପାରୁନାହିଁ– ମା' ପ୍ରୁ ।' ସେହିଦିନରୁ ଆମ ବୁଢ଼ା-ବୁଢ଼ୀ ଦି'ଜଣଙ୍କ ଆଖିରୁ ଲୁହ ଶୁଖୁନାହିଁ । ଏଇ ସାନପୁଅ ମୁହଁକୁ ଚାହିଁ ବୁଢ଼ୀଟା ବଞ୍ଚିଥିଲା । ତମକୁ କ'ଣ ଅଜଣା ମା'ପ୍ରଭୁ, ମନୁଆଁଟା ଥିଲା– ଆମ ମୁଣ୍ଡାସାହିର ସୁନାମୁଣ୍ଡା । ତା'ର ଯେମିତି ରୂପ, ସେମିତି ବୁଦ୍ଧି । ପାଠପଢ଼ା ପ୍ରତି ତା'ର କେତେ ଆଦର ! ଇସ୍କୁଲ ମାଷ୍ଟ୍ରେ କହିଥିଲେ– 'ତାକୁ ନେଇ ପାଟଣା ଆଶ୍ରମ ସ୍କୁଲରେ ନାଆଁ ଲେଖେଇ ଦିଅ । ସେଇଠି ଖାଇବା ପିଇବା ବ୍ୟବସ୍ଥା ସରକାର କରିଛନ୍ତି । ସେ ପିଲାଟାର ମଗଜ ଅଛି । ଦେଖିବ–ପାଠପଢ଼ି ସାରିଲେ ସେ ଗୋଟିଏ ଅଫିସର ଚାକିରି କରିବ' ।

ମାଷ୍ଟରଙ୍କ କଥା ସତ ହେଲା । ସେ ତ ବହୁତ ଭଲ ପଢ଼ିଲା । ସେଇଥିପାଇଁ ତ ମୁଁ ମା'ପ୍ରଭୁଙ୍କୁ ଅଶୀର୍ବାଦ ମାଗିଥିଲି । ତମର ଆଶୀର୍ବାଦରୁ ସେ ଭଲ ପାଠ ପଢ଼ି ଆଶ୍ରମରୁ କେନ୍ଦୁଝରର କଲେଜକୁ ଗଲା । ସବୁ କଥା ସରକାର ବୁଝିଲେ । ମୁଁ ଦୁଃଖ କଷ୍ଟରେ ଯାହା ରୋଜଗାର କରି ରଖୁଥିଲି ସବୁ ତ ତା'ରି ପାଇଁ । ତା'ର ପଢ଼ା ସରିଲେ ଚାକିରି ହେଇଯିବ ବୋଲି କହୁଥିଲା । ହେଲେ କାହାକୁ କିଛି ନ କହି ସେ ପୁଣି କୁଆଡ଼େ ଚାଲିଗଲା । ତାକୁ ଫେରେଇ ଆଣ ମା' ପ୍ରୁ ।'

ତୁମା ଉଦ୍ଦେଶ୍ୟରେ ଏକଥା କହିଲାବେଳେ ସନିଆଁର ଆଖିରୁ ଧାର ଧାର ଲୁହ ବୋହି ଯାଉଥାଏ । ମହୁଲ ଗଛ ତଳେ ଠିଆ ହେଇ ସେ ଗଛ ଦେହରେ ମୁଣ୍ଡ ବାଡ଼େଇ ଚାଲିଥାଏ । ଘର ଭିତରୁ ଶୁକୁରୀ ବୁଢ଼ୀର ବିକଳ କାନ୍ଦଣା ସ୍ୱର ତା' କାନରେ ବାଜି ଯାଉଥାଏ । ସେ ମହୁଲ ଗଛକୁ କୁଣ୍ଢେଇ ଧରି କାନ

ପାରିଥାଏ । ତୁମାମାନେ କେହି କିଛି କହିଲେ ନାହିଁ । ମନକୁ ମନ ସେ କହିଲା– 'ସବୁ ଦୁଃଖ ତ କହିଦେଲି ମା' ପ୍ଲୁ । ତୁଇ ଯାହା କରବୁ । ମୋତେ ମାରିପକା ପଛେ ମୋ ମନୁଆଁଟାକୁ ମୁଣ୍ଡା ସାହିକୁ ଫେରେଇ ଆଣ ।'

ଏତିକି ବେଳେ ଗାଁ' ସରପଞ୍ଚ ଶଙ୍କର ମୁଣ୍ଡା ଆଉ ମେମ୍ବର ଚନ୍ଦୁ ଆସି ସେଇଠି ପହଞ୍ଚିଗଲେ । ତାଙ୍କ ଉପରେ ଦୃଷ୍ଟି ପଡ଼ିଯିବାରୁ ସନିଆଁର ହାତ ହୁଗୁଳା ହେଇଗଲା । ସେ ମହୁଲ ଗଛକୁ ଛାଡ଼ି ତାଙ୍କ ଆଡ଼କୁ ଆଗେଇ ଆସିଲା । ସରପଞ୍ଚ କହିଲେ– 'ସନିଆଁ ଭାଇ ! ଆଉ କାନ୍ଦିଲେ କ'ଣ ହେବ !' ତୋ' ପୁଅ ମନୁଆଁର ଖବର ମିଳିଛି । ଚନ୍ଦୁ କ'ଣ କହୁଛି, ତା'ଠାରୁ ଭଲ କି ଶୁଣିନେ ?

କୋଟିନିଧି ପାଇଲା ପରି ସନିଆଁ ବିକଳ ମନରେ ଚନ୍ଦୁଆଡ଼କୁ ଦୌଡ଼ିଯାଇ ତା' ହାତକୁ ଧରି କହିଲା– 'ଚନ୍ଦୁ ! ତୁ ମୋ ମନୁଆଁ ଖବର କ'ଣ ଆଣିଛୁ, ମୋତେ ଆଗ କହ ।'

ଚନ୍ଦୁ ମୁଣ୍ଡା କଥାଟାକୁ ଗିଳେଇ ଗିଳେଇ କହିଲା– 'କଥା କ'ଣକି, ମନୁଆଁ କିଛି ଟଙ୍କା ମୋତେ ଦେଇଯାଇଛି, ତତେ ଦେଇ ଦେବାକୁ । ସେ ଗଲାବେଳେ ତମ ଦି'ଜଣଙ୍କୁ ବହୁତ ଖୋଜୁଥିଲା । ତମେ ଦି'ଜଣ ଜଙ୍ଗଲକୁ ଯାଇଥିଲ । ତା' ହାତରେ ତ ଆଉ ବେଳ ନଥିଲା । ସେ ମୋତେ କହିଲା– 'କାକା, ଏ' ଦଶହଜାର ଟଙ୍କା ତମେ ରଖିଥା । ବାପାଙ୍କୁ କହିବ, ଭଲକି ଘରଟିଏ କରି ଆରାମରେ ରହିବେ । ମୋତେ ଖୋଜିବେ ନାହିଁ । ମୁଁ ମଝିରେ ମଝିରେ ଆହୁରି ଟଙ୍କା ପଠେଇବି ।'

ହଁ, ଶୁଣ ! ସେ ଟଙ୍କାକୁ ମୁଁ ନେଇ ବ୍ୟାଙ୍କରେ ରଖି ଦେଇ ଆସିଛି । ତୋ'ର ଯେତେବେଳେ ଦରକାର ହେବ, ମୋତେ କହିବୁ, ମୁଁ ଧୀରେ ଧୀରେ ତତେ ଦେଇଦେବି । ହେଲା, ଏବେ ଖୁସ୍ ତ ?'

ଡିମା ଡିମା ଆଖି କାଢ଼ି ବୋକାଙ୍କ ଭଳି ସନିଆଁ ଚନ୍ଦୁ ମୁହଁକୁ ଚାହିଁ ରହିଲା । ତା' ପାଟିରୁ ଆଉ କିଛି କଥା ବାହାରିଲା ନାହିଁ ।

ସରପଞ୍ଚ କହିଲେ, 'କିରେ ସନିଆଁ ଭାଇ ! ଏମିତି ଭୋକୁଆ ଭଳି ଅନେଇଛୁ କ'ଣ ? ମନୁଆଁ ତ ତତେ ଏକାଥରେ ଧନୀ କରି ଦେଇଗଲା, ଆଉ ଦୁଃଖ କ'ଣ । ଯା' ବୁଢ଼ୀକୁ ଏ' ଖବରଟା ଦେଇ ଦେ । ମନୁଆଁ କହି ଯାଇଛି, ପୁଣି ଟଙ୍କା ପଠେଇବ । ଆରେ, ଆଜିକାଲି ଟଙ୍କା ଯାହା ପାଖରେ, ସବୁ କ୍ଷମତା ତା' ପାଖରେ । ଏବେ ଆମ ମୁଣ୍ଡାସାହିର ୫ ନମ୍ବର ଧନୀ ହେଲୁ ତୁ । ଦେଖ୍– ଏବେ ତୋ' ଭାଗ୍ୟ କେମିତି ବଦଳିଯିବ । ଏବେ ତ ତୋ'ଘରେ ଖାଲି ଟଙ୍କା ଆଉ ଟଙ୍କା । କେତେ ଖାଇବୁ ଖାଆ– କେତେ ପିଇବୁ ପି ! ହଉ ଏବେ ଯାଉଛି ।'

ସରପଞ୍ଚଙ୍କ କଥା ସରିଲାବେଳକୁ ସନିଆଁର ମୁଣ୍ଡ ବୁଲେଇ ଦେଲା । ସେ କଟାଗଛ ଭଳି ତଳେ କଚାଡ଼ି ହୋଇ ପଡ଼ିଲା । ଚନ୍ଦୁ ଆଉ ସରପଞ୍ଚ ତାକୁ ଟେକି ନେଇ ତା' ଘର ଭିତର ଖଟିଆରେ ଶୁଆଇ ଦେଲେ । ଶୁକୁରୀ ବୁଢ଼ୀ ସେଇ ଘର କୋଣରେ କନ୍ଥା ଘୋଡ଼େଇ ହେଇ ଧକେଇ ଧକେଇ କାନ୍ଦୁଥିଲା । ସିଏ କାହାରି କଥା କିଛି ଶୁଣି ପାରୁ ନଥିଲା ।

○



# ଦୁଇ

ତାପର ଦିନ ସନିଆଁ ପାଇଁ ରାତି ପାହିଲା ବହୁତ ଡେରିରେ । ଆକାଶଟା ମେଘୁଆ ମେଘୁଆ ଦିଶୁଥିଲା । ଅନ୍ୟଦିନ ଭଳି ବଣପକ୍ଷୀଙ୍କ ରାବ ତା' କାନକୁ ଶୁଭୁ ନଥିଲା । କେବଳ ଶୁକୁରୀ ବୁଢ଼ୀର କୁଛେଇ ହେବା କାନ୍ଦ ତା' କାନରେ ପ୍ରତିଧ୍ୱନିତ ହେଉଥିଲା । ଖଟିଆ ଉପରେ ବସିପଡ଼ି ସନିଆଁ ଭାବିଲା– 'ତା' ପୁଅର ଖବରଟା ବୁଢ଼ୀକୁ ଆଗ କହିଦେବା ଉଚିତ । ସିଏ ତ ତା' ବିଷୟରେ କିଛି ଶୁଣି ପାରିନାହିଁ । ଯେତିକି ମୋ କାନରେ ପଡ଼ିଛି, ସେତିକି କହିବା ଭଲ । ମାଆ ମନ ତ ! ପୁଅ କଥା ଶୁଣି କାଳେ ବୁଢ଼ୀ ବିଛଣାରୁ ଉଠି ବସିବ' ।

ସନିଆଁ ମୁହଁ ବୁଲେଇ ବୁଢ଼ୀ ଆଡ଼କୁ ଚାହିଁଲା । ବୁଢ଼ୀ ଉପରେ ଛିଣ୍ଡା କନ୍ଥାଟା ସେଇମିତି ପଡ଼ିଛି । ବୁଢ଼ୀ ତା' ଭିତରେ ମୋଡ଼ିମାଡ଼ି ହେଇ ଚୁପ୍‌ଚାପ୍ ଶୋଇ ପଡ଼ିଛି । ବିଚାରି ଦି' ଦିନ ହେଲା, କେବଳ କାନ୍ଦି ଚାଲିଛି, ଖାଇନାହିଁ କି ପାଣି ପିଇନାହିଁ । ଶୋଇବା ତ ଦୂରର କଥା । ପୁଅକୁ ନ ଦେଖିବା ଯାଏ ସେ ଅନ୍ନଜଳ ଛୁଇଁବ ନାହିଁ ବୋଲି ଜିଦ୍ ଧରି ରହିଛି । ପାହାନ୍ତିଆ ଥଣ୍ଡା ପବନ ବାଜିବାରୁ ବୁଢ଼ୀକୁ ଟିକେ ନିଦ ହେଇଯାଇଥିବ । ସବୁଦିନ ପରି ଆଜି ତ ଜଙ୍ଗଲକୁ ଯିବାର ନାହିଁ । ଯଦି ଟିକେ ଶୋଇପଡ଼ିଛି, ଶୋଇଥାଉ । ଯା' ଭିତରେ ମୁଁ ଯାଇ ଚନ୍ଦୁ ଆଉ ସରପଞ୍ଚଙ୍କଠାରୁ ମନୁଆଁ ବିଷୟରେ ସବୁକଥା ଠିକ୍ ଭାବରେ ବୁଝିସାରେ । ଏକାଥରେ ସବୁକଥା ବୁଢ଼ୀକୁ ବୁଝେଇ କହିଦେବି । ପୁଅ କଥା ଶୁଣିଦେଲେ ସେ ତୁଣ୍ଡରେ ପେଜପାଣି ଟିକେ ଦେବ ।

ଖଟିଆରୁ ଉଠିପଡ଼ି ସନିଆଁ ଆଗ ଚାଲିଲା, ମହୁଲ ଗଛ ମୂଳକୁ । ମହୁଲ ଗଛକୁ କୁଣ୍ଢେଇ ଧରି ପୁଣି କହି ଚାଲିଲା– 'ମା' ପ୍ରଭୁ ! ତମକୁ ସବୁ କଥା ଜଣା । କପଟିଆ ସରପଞ୍ଚ ସାଙ୍ଗରେ ପଡ଼ି ମୋ ନିଜ ସାନଭାଇ ଚନ୍ଦୁର କୁକର୍ମ ଦିନକୁ ଦିନ ବଢ଼ିଯାଉଛି । ମୋ ପୁଅକୁ ସେ ନିଶ୍ଚୟ ବିକି ଦେଇଛି । ତମେ ଦେଖିଛ, ଏଇ ଚନ୍ଦୁ ପାଇଁ ମୁଁ କ'ଣ ନ କରିଛି ? ପିଲାଟି ବେଳୁ ବାପା–ମାଆ

ବି'ଜଣ ମେଲେରିଆ ଜରରେ ପଡ଼ି ମରିଗଲେ । ମୁଁ ମୂଲ ମଜୁରୀ ଲାଗି ତାକୁ ମଣିଷ କଲି । ବାପା-ମାଆଙ୍କ ଭଳି ତାକୁ ଖୋଇପେଇ ବଡ଼ କରିଥିଲି । ମୁଁ ନିଜେ ଖଣ୍ଡେ ନୂଆ ଲୁଗା ନ ପିନ୍ଧି ତାକୁ ପିନ୍ଧିବାକୁ ଦେଇଥିଲି । ଆଜି ମୋ ଦେହରୁ ବଳ ହଟିଗଲା । ସେ ଗାଆଁର ମେମ୍ବର ହେଇ ରାଜନୀତି କରୁଛି । ସରପଞ୍ଚର ହାତ ବାରେଣି ହେଇଛି । ଟଙ୍କା ପାଇଁ ସେ ଆଜି ଅମଣିଷ ହୋଇଯାଇଛି । କେଇଟା ଟଙ୍କା ଲୋଭରେ ମୋ' ପୁଅକୁ ମାଓବାଦୀଙ୍କ ହାତରେ ଟେକି ଦେଇଛି । ମୁଁ ଏବେ କ'ଣ କରିବି ? ଶୁକୁରୀ ବୁଢ଼ୀକୁ କ'ଣ କହି ତା' ମନବୋଧ କରିବି । ମୋତେ ବୁଦ୍ଧି ବତେଇ ଦିଅ ମା'ପ୍ରଭୁ' ।

ସନିଆଁ ମହୁଲ ଗଛକୁ କୁଣ୍ଢେଇ ଧରି ଢେର ସମୟ କାନ୍ଦିଥିଲା । ଧୀରେ ଧୀରେ ତା' ହାତ ହୁଗୁଳା ହୋଇଗଲା । ସେ ଭାବିଲା- 'ଏଇମିତି ଗଛକୁ ଧରି କାନ୍ଦିଲେ, କିଛି ଲାଭନାହିଁ । ବୁଢ଼ୀଟା ଏବେ ବି ଉଠିନାହିଁ । ଯେତିକି ଶୁଣିଛି, ସେତିକି ତାକୁ ଶୁଣେଇ ଦେଇ ତା'ପରେ ଯିବି ଚନ୍ଦୁ ପାଖକୁ । ସିଏ ଏବେ ସରପଞ୍ଚ ସାଙ୍ଗରେ ମିଶି କୋଉଠି କ'ଣ କରୁଥିବ କେଜାଣି ! ଯାଏ ତା'ଠାରୁ ସବୁ କଥା ବୁଝିନିଏ । ହେଇପାରେ ସେ ନିର୍ଦ୍ଦୋଷ, କାହିଁକି ନା' ସେ ପରା ମୋ ବାପାଠୁଁ ଜନ୍ମ ନେଇଛି । ସିଏ ଏତେ ବେଇମାନୀ ହେଇ ନ ପାରେ । ଏ' ସବୁ ଦୁର୍ବୁଦ୍ଧି ସେଇ ସରପଞ୍ଚର ହୋଇଥିବ । ଅସଲ ବେଳ ଦେଖି ତାକୁ ନିଶ୍ଚୟ ମଜା ଚଖେଇବି' ।

ଏମିତି ଭାବୁଭାବୁ ସେ କେତେବେଳେ ଶୁକୁରୀ ବୁଢ଼ୀ ପାଖରେ ପହଞ୍ଚି ଗଲାଣି, ନିଜେ ଜାଣି ପାରିଲା ନାହିଁ । ବୁଢ଼ୀ ବିଛଣା ପାଖରେ ନଇଁ ପଡ଼ି କହିଲା- 'ଉଠ ଲୋ ବୁଢ଼ୀ ! କାଲି ସରପଞ୍ଚ ସାଙ୍ଗରେ ଚନ୍ଦୁ ଆସିଥିଲା । ସେ କହୁଥିଲା- ମନୁଆଁ ଆମପାଇଁ ଟଙ୍କା ଦେଇ ଯାଇଛି । କହିଯାଇଛି- ଆହୁରି ଟଙ୍କା ପଠେଇବ । ସେ ଟଙ୍କା ସବୁ ଚନ୍ଦୁ ରଖିଛି । ବଞ୍ଚିଛି ଲୋ, ମନୁଆଁ ବଞ୍ଚିଛି । ଯୋଉଠି ଥାଉ ପଛକେ ବଞ୍ଚି ଜୀଇଁକି ଭଲରେ ଥାଉ' ।

ସନିଆଁ ଭାବିଥିଲା- ମନୁଆଁ କଥା ଶୁଣି ବୁଢ଼ୀ କନ୍ଥାକୁ ଫୋପାଡ଼ି ଦେଇ ବିଛଣାରୁ ଉଠି ଠିଆ ହେଇ ପଡ଼ିବ । ଆଗ ପୋଡ଼ାମୁହାଁ ଚନ୍ଦୁକୁ ସଁପିବ ।

ସରପଞ୍ଚକୁ ତା' ଠେଙ୍ଗାରେ ପିଟିବାକୁ ଦଉଡ଼ିଯିବ । ଅଲଖଣାକୁ ମୁଣ୍ଡାସାହି ଛାଡ଼ି ଚାଲିଯିବାକୁ ଧମକ ଦେବ । ସବାଖିଆ ମାଓବାଦୀଙ୍କ ସାତପୁରୁଷଙ୍କୁ ଉଝାଳି ପକେଇବ । ମନୁଆଁକୁ ଫେରେଇ ଆଣିବାକୁ ନିଜେ ଜଙ୍ଗଲ ଆଡ଼କୁ ଦଉଡ଼ି ଯିବ । ଦରକାର ହେଲେ ମାଓବାଦୀଙ୍କ ଗୋଡ଼ତଳେ ପଡ଼ିଯିବ । କାନିପାତି ତା' ପୁଅକୁ ଭିକ ମାଗିବ । ତା' ବଦଳରେ ମୋ ଜୀବନଟାକୁ ନେଇଯାଆ ବୋଲି କହି ବିକଳ ହେଇ କାନ୍ଦିବ । ମୋ ହାତକୁ ଧରି ମୋତେ ଘୋଷାଡ଼ି ନେଇଯିବ–ସେଇ ଅନ୍ଧାରୁଆ ହୁଡ଼ି ପାଖକୁ, ଯେଉଁଠି ଦଳେ ମାଓବାଦୀ ବସି ଚୁପ୍‌ଚୁପ୍ କ'ଣ ସବୁ କଥା ହୁଅନ୍ତି ।

ସନିଆଁ ଏତେକଥା ଭାବିସାରି ପୁଣି ବଡ଼ ପାଟିରେ ଡାକଦେଲା– 'ଆଲୋ ବୁଢ଼ୀ ! ଶୁଣୁନୁ କାହିଁକି ? କହିଲି ପରା ମନୁଆଁ ଟଙ୍କା ଦେଇ ଯାଇଛି । ଚନ୍ଦୁକୁ କହିଯାଇଛି– ଆହୁରି ଟଙ୍କା ପଠେଇବ । ଏମିତି ପଡ଼ି ରହିଲେ ଲାଭ କ'ଣ ? ଯାହା ତ ହବାର କଥା ହେଇଗଲାଣି । ଏବେ ଉଠ ।'

ତଥାପି ବୁଢ଼ୀ ଉଠିଲା ନାହିଁ କି ହଲଚଲ ବି ହେଲାନାହିଁ ।

ସନିଆଁ ମନରେ ଛନକା ପଶିଲା– ସେ ବୁଢ଼ୀର କନ୍ଥାକୁ ବାହାର କରିଦେଲା । ଦେହରେ ହାତ ମାରିଲା, ନାକ ପୁଡ଼ାରେ ହାତ ଲଗେଇଲା । ହାତ ପାପୁଲିକୁ ଅଣ୍ଡାଳି ଜାଣିଲା– ବୁଢ଼ୀର ହାତ ହେମାଳ ହେଇଗଲାଣି । ତେବେ ସତକୁ ସତ ବୁଢ଼ୀ କାଲି ରାତିରୁ ଆର ପାରିକୁ ଚାଲିଯାଇଛି । ସେ ଆଉ ଧୈର୍ଯ୍ୟଧରି ରହି ପାରିଲା ନାହିଁ । ବୁଢ଼ୀ ଉପରେ କଚାଡ଼ି ହେଇ ପଡ଼ିଲା । ମନଭରି କାନ୍ଦିଲା । ଭାବି ଚାଲିଲା–

ଚନ୍ଦୁ ଆଉ ସରପଞ୍ଚ ପାଇଁ ଆଜି ତା' ବୁଢ଼ୀର ଏ' ଅବସ୍ଥା । ଏକଥା ସେ ସାହିଯାକର ଲୋକଙ୍କୁ ଜଣେଇ ଦେବ । ତା'ପରେ ଯାଇ ବୁଢ଼ୀକୁ ନେଇ ସେଇ ହୁଡ଼ି ତଳେ ପୋତି ଦେଇ ପଥର ଖଣ୍ଡିଏ ଲଦିଦେବ । ସେଇଠି ଥାଇ ସେ ସବୁଦିନ ମନୁଆଁକୁ ଦେଖୁଥିବ । ମାଓବାଦୀଙ୍କ କଥାବାର୍ତ୍ତାକୁ ଶୁଣି ପାରୁଥିବ । ମନଭରି ତାଙ୍କୁ ଗାଳି ଦେଉଥିବ । ଦରକାର ହେଲେ, ତାଙ୍କ ଗୋଡ଼ତଳେ ପଡ଼ି ପୁଅକୁ ଭିକ ମାଗୁଥିବ ।



# ତିନି

ସନିଆଁ ଆଗ ଦୌଡ଼ିଲା ଚନ୍ଦୁଘରକୁ । ଚନ୍ଦୁ ଏବେ ନୂଆଘର ତିଆରି କରି ଗାଆଁ ମୁଣ୍ଡକୁ ଉଠିଯାଇଛି । ଗାଆଁର ମେମ୍ବର ହେବା ଦିନଠାରୁ ସେ ଆଉ ଘରେ ରହୁନାହିଁ । ସବୁବେଳେ ସେହି ସରପଞ୍ଚ ପଛରେ ବୁଲୁଛି । ସନିଆଁ ସରପଞ୍ଚକୁ ଖୋଜିବାକୁ ଚାଲିଲା– ନୂଆସାହିକୁ । ସେଇଠି ଗୋଟାଏ ନୂଆ ଚର୍ଚ୍ଚଘର ତିଆରି ହେଇଛି । ଚର୍ଚ୍ଚ ଦାୟିତ୍ୱରେ ଏବେ ଅଛି ସେଇ ସରପଞ୍ଚ । ସେଇଠୁ ଭଲ ଦି'ପଇସା ତା'ର ରୋଜଗାର ହୁଏ । ସଂଜ ସକାଳେ ସରପଞ୍ଚ ସେଇଠି ବସାଉଠା କରେ । ଦିନଯାକ ତ ରାଜନୀତି । ଦି' ଚାରିଟା ଲେଖା ମାଓବାଦୀ ଟୋକା ଆସି ତା' ସାଙ୍ଗରେ କେତେ କ'ଣ ଗପ କରନ୍ତି । ଟଙ୍କା ପଇସା ଦିଆନିଆ ହୁଏ । ସେଇଠି ବେକାର ପିଲାମାନଙ୍କୁ ଚାକିରି ମିଳିବାର ପ୍ରତିଶ୍ରୁତି ମିଳେ । ଇନ୍ଦିରା ଆବାସ ଯୋଜନାରେ ଘର କାହାକୁ ଦିଆଯିବ, କେଉଁ ବୁଢ଼ାବୁଢ଼ୀକୁ ଅନ୍ତ୍ୟୋଦୟ ଯୋଜନାରେ ଚାଉଳ ଦିଆଯିବ, ବିପିଏଲ କାର୍ଡ଼ ଯାହାର ନାହିଁ, ତାଙ୍କୁ କେମିତି ତାହା ସହଜରେ ମିଳି ପାରିବ, ସେ ସବୁକଥା ସେଇ ଚର୍ଚ୍ଚ ପିଣ୍ଡାରେ ଆଲୋଚନା ହୁଏ । କେତେଟା ଅନ୍ଧ ପଢୁଆ ମୁଣ୍ଡାପିଲାଙ୍କୁ ନେଇ ସେଇଠି ଗୋଟାଏ କ୍ଲବ୍ ଗଢ଼ି ଉଠିଛି । ତାସ୍ ଖେଳ ବି ହୁଏ । ସରକାରୀ ବାବୁମାନେ ଆସିଲେ, ସେଇ ଚର୍ଚ୍ଚ ଆଗରେ ଥିବା ପଡ଼ିଆରେ ସଭା ସମିତି କରନ୍ତି । ଏବେ ସରପଞ୍ଚ ଭାବରେ ଶଙ୍କର ମୁଣ୍ଡାର କାର୍ଯ୍ୟ କଳାପ ବଢ଼ିଯାଇଛି ।

ବାଟାଳ ପରି ହେଇ ସନିଆଁ ଯାଇ ନୂଆସାହି ଚର୍ଚ୍ଚ ପାଖରେ ପହଞ୍ଚିଲା । ଦୂରରୁ ଦେଖିଲା, ସରପଞ୍ଚ ଆଉ ଚନ୍ଦୁ ଦି'ଜଣ ବାହାରିଆ ଲୋକଙ୍କ ସାଙ୍ଗରେ କ'ଣ କଥାବାର୍ତ୍ତା ହେଉଛନ୍ତି । ସନିଆଁକୁ ଦେଖି ସେ ଦୁଇଜଣ ଅଚିହ୍ନା ଲୋକ ତରବର ହେଇ ସେଠାରୁ ଜଙ୍ଗଲ ଆଡ଼କୁ ଚାଲିଲେ । ଏଣେ ଚନ୍ଦୁ ତରବର ହେଇ ତା' ପାଖକୁ ଆସି କହିଲା– 'ଭାଇ ! ଏବେ ତମର ଦେହଟା କେମିତି

ଅଛି ? କିଛି ଖିଆପିଆ କଲଣି କି ନାହିଁ ? ଭାଉଜକୁ ସବୁକଥା ବୁଝେଇ ଦେଲ ନା ନାହିଁ' ।

ଏତେଗୁଡ଼ାଏ ପ୍ରଶ୍ନର ଉତ୍ତର ଦେବାକୁ ସନିଆଁର ଆଉ ଧୈର୍ଯ୍ୟ ନଥିଲା । ସେ ଭୋ–କରି କାନ୍ଦି ଉଠିଲା । ସରପଞ୍ଚ ଦୌଡ଼ିଆସି ତାକୁ କୁଣ୍ଢେଇ ପକେଇ କହିଲେ– 'ସନିଆଁ ଭାଇ ! ପିଲାଙ୍କ ଭଳି ଅବୁଝା ହେଇ କାନ୍ଦୁଛ କ'ଣ ? ମନୁଆଁ କ'ଣ ଛୋଟ ପିଲା ହେଇଛି । ସେ ଆମ ଅଂଚଳର ସବୁଠୁ ଭଲପିଲା । ପାଠରେ ଯେମିତି ଆଗୁଆ, ଦେଖିବାକୁ ସେମିତି ହୀରୋ । ବୁଦ୍ଧିରେ କ'ଣ ତାକୁ କିଏ ଟପି ଯାଇପାରିବ ? ତା' ଚିନ୍ତା ମୋଟେ କରନା । ଆମେ ଅଛୁ । ତା' ଖବର ଅନ୍ତର ଆମେ ରଖିବୁ' ।

ଶଙ୍କରର କଥା ସରିଛି କି ନାହିଁ, ସନିଆଁ କାନ୍ଦି କାନ୍ଦି କହିଲା– 'ଚନ୍ଦୁରେ ! କାଲି ରାତିରେ ତୋ' ଭାଉଜ ଆମକୁ ଛାଡ଼ି ଚାଲିଯାଇଛି ରେ !! ଆଜି ଟିକେ ଡେରିରେ ଉଠି ତାକୁ ଦେଖିଲି, ତା' ପିଣ୍ଡରେ ପ୍ରାଣ ନାହିଁରେ । ବିଚାରୀ ମନୁଆଁକୁ ଝୁରିଝୁରି ମରିଗଲା । ମୋତେ ଚାରିଆଡ଼ ଅନ୍ଧାର ଦିଶୁଛି । କ'ଣ କରିବି, ମୋତେ ବୁଦ୍ଧିବାଟ ଦିଶୁନି ।'

ଚନ୍ଦୁ ଆଉ ଶଙ୍କର ସନିଆଁ ସାଙ୍ଗରେ ଘରକୁ ଫେରିଲେ । ଚାହୁଁଚାହୁଁ ମୁଣ୍ଡାସାହିର ଲୋକ ଆସି ସେଇଠି ଜମା ହେଇଗଲେ । ଚାରିଆଡ଼େ ଚୁପ୍‌ଚାପ୍ କଥାବାର୍ତ୍ତା । ସମସ୍ତଙ୍କ ମୁହଁରେ ଗୋଟିଏ କଥା, ସରପଞ୍ଚ ଶଙ୍କର ମୁଣ୍ଡାର ଇଏ ହଉଚି ପରପଞ୍ଝିଆ କାମ । ମନୁଆଁକୁ ସିଏ ହିଁ ମାଓବାଦୀ ଦଳରେ ମିଶେଇ ଦେଇଛି । ମୁଣ୍ଡା ଟୋକା କେତେଜଣ ସିଧା ଶଙ୍କରକୁ ଦୋଷ ଦେଇ ପାଟିକଲେ ।

ଅବସ୍ଥାକୁ ସମ୍ଭାଳି ନେବାପାଇଁ ଚନ୍ଦୁ ସମସ୍ତଙ୍କୁ ହାତଯୋଡ଼ି କହିଲା– 'ଆମ ସରପଞ୍ଚ ଶଙ୍କର ମୁଣ୍ଡାର ଏଥିରେ କୌଣସି ହାତ ନାହିଁ । ଭାଉଜଙ୍କ ସଂସ୍କାର କାମଟା ଆଗ ସରିଯାଉ । ମୁଁ ସବୁକଥା ଗ୍ରାମବାସୀଙ୍କ ଆଗରେ ପ୍ରକାଶ କରିଦେବି । ଯଦି ଏଥିପାଇଁ ସରପଞ୍ଚ କି ମୁଁ ଦୋଷୀ ସାବ୍ୟସ୍ତ ହେଉ, ତେବେ ସାହିଲୋକ ଆମକୁ ଯାହା ଦଣ୍ଡ ଦେବେ, ତାକୁ ଆମେ

ମଥାପାତି ଗ୍ରହଣ କରିବୁ । ମୋ' ଭାଇର ବିପଦ ବେଳେ ତମେମାନେ ଗଣ୍ଡଗୋଳ ସୃଷ୍ଟି କରନା ।

ସନିଆଁ ବି ହାତ ଯୋଡ଼ି କହିଲା–'ହଁ'ରେ ପିଲାଏ ! ତମକଥା ନିଶ୍ଚୟ ବିଚାର କରାଯିବ । ଆଗ ଚାଲ ବୁଢ଼ୀକୁ ନେଇ ସମାଧୀ ଦେଇଆସିବା' ।

ମୁଣ୍ଡାସାହିର ଟୋକାମାନେ ଏକଯୁଟ ହୋଇ ଶୁକୁରୀ ବୁଢ଼ୀକୁ ନେଇ ଜଙ୍ଗଲ ପାଖରେ ପୋତିଦେଇ ବଡ଼ ପଥର ଖଣ୍ଡେ ଲଦିଦେଇ ଆସିଲେ । କିନ୍ତୁ ମୁଣ୍ଡାସାହି ଆଉ ନୂଆସାହିରେ ଚହଳ ପଡ଼ିଗଲା ଯେ, ସରପଞ୍ଚ ଆଉ ଚନ୍ଦୁପାଇଁ ଶୁକୁରୀ ବୁଢ଼ୀ ମରିଗଲା । ଚାରିଆଡ଼େ ଉତ୍ତେଜନା ଲାଗି ରହିଲା ।

○



# ଚାରି

ସଂଜବେଳକୁ ମୁଣ୍ଡାସାହିର ଟୋକାମାନେ ନୂଆସାହି ଚର୍ଚ୍ଚ ପଡ଼ିଆରେ ନିଶାପ ବସେଇଲେ । ବୁଢ଼ାବୁଢ଼ୀ ଲୋକମାନଙ୍କୁ ନିଶାପକୁ ଡକାଗଲା । ସନିଆଁ, ସରପଞ୍ଚ ଶଙ୍କର ଆଉ ଓ୍ୱାର୍ଡ଼ ମେମ୍ବର ଚନ୍ଦ୍ରୁଙ୍କୁ ଆଗରେ ବସାଗଲା । ସନିଆଁ ତା'ର ପୁଅ କଥା ଆରମ୍ଭ କରି କହିଲା– 'ଭାଇମାନେ ମୋ ପୁଅ ମାନସ ମୁଣ୍ଡା କଲେଜରେ ପଢ଼ା ଶେଷକରି ଗାଆଁକୁ ଆସିଥିଲା । ତାକୁ ସରକାରୀ ଚାକିରି ମିଳିଯିବ ବୋଲି କହୁଥିଲା । ତିନିଦିନ ତଳେ ମୋ ମନୁଆଁକୁ ମାଓବାଦୀମାନେ ଅପହରଣ କରି ନେଇ ଯାଇଛନ୍ତି । ତାକୁ ଝୁରିଝୁରି ତା' ମାଆ ପ୍ରାଣ ଛାଡ଼ିଦେଲା । ମୋର ଅବସ୍ଥା ବହୁତ ଖରାପ । ଆମ ସରପଞ୍ଚ ଶଙ୍କର ଆଉ ମୋ ସାନଭାଇ ଚନ୍ଦୁ କାଲି ସଂଜବେଳେ କହିଲେ କି, ମନୁଆଁ ତାଙ୍କ ହାତରେ ଟଙ୍କା ଦେଇ ଯାଇଛି । ଆଉ ତାଙ୍କୁ କହିଯାଇଛି– ଆହୁରି ଟଙ୍କା ପଠେଇବ । ଏଥିରୁ ମୁଁ ମନେ କରୁଛି, ମୋ ପାଠପଢୁଆ, ବୁଦ୍ଧିଆ ପୁଅ ମନୁଆଁକୁ ଏ' ଦୁହେଁ ଅପହରଣ କରିବାରେ ସାହାଯ୍ୟ କରିଛନ୍ତି । ଏ' ବିଷୟରେ ନିଶାପରେ ଉପଯୁକ୍ତ ବିଚାର କରାଯାଉ' ।

ଗାଁ' ମୁଖିଆ ବିନୁ ମୁଣ୍ଡା ସରପଞ୍ଚ ଶଙ୍କରକୁ ଏ' ବିଷୟରେ ଗ୍ରାମବାସୀଙ୍କୁ ଜଣେଇବାକୁ କହିଲେ । ସରପଞ୍ଚ ଶଙ୍କର ମୁଣ୍ଡା ଠିଆ ହେଇ କହିଲେ– 'ସଭାରେ ଉପସ୍ଥିତ ଗ୍ରାମର ଗୁରୁଜନମାନେ ! ମୁଁ ଈଶ୍ୱରଙ୍କ ନାମରେ ଶପଥ ନେଇ କହୁଛି– ମନୁଆଁକୁ ଅପହରଣ କରିବାରେ ମୋର କିମ୍ବା ଚନ୍ଦୁର କିଛି ସ୍ୱାର୍ଥ ନାହିଁ । ମୋ ଜାଣିବାରେ ମନୁଆଁ ନିଜେ ମାଓବାଦୀ ଦଳରେ ସାମିଲ ହେବାକୁ ଚାଲିଯାଇଛି । ଆମ ଜାଣିବାରେ ସେ ଦୁଇଜଣ ମାଓବାଦୀଙ୍କୁ ଡକେଇ ତାଙ୍କ ସହିତ କଥାବାର୍ତ୍ତା କରି ତାଙ୍କଠାରୁ ଟଙ୍କା ଆଣି ଆମ ହାତରେ ଦେଇଛି । ଆମକୁ ସେ ତା'ର ବାପାମାଆଙ୍କ ରାଣ ପକେଇ ଏକଥା ପ୍ରଘଟ ନ କରିବାକୁ କହିଥିଲା । ତେଣୁ ଆମେ ଦି'ଜଣ ଏ' ଘଟଣାକୁ ଜାଣି ମଧ୍ୟ ନ ଜାଣିଲା ପରି ରହିଥିଲୁ ।

ଚନ୍ଦୁ ଠିଆ ହେଇପଡ଼ି କହିଲା– 'ଏଇଠି ମୋର କିଛି କହିବାର ଅଛି । ମନୁଆଁ ଜହ୍ନ ନାମରେ ଗୋଟିଏ ସହରୀ କଲେଜ ଝିଅକୁ ଭଲ ପାଉଥିଲା । ସେ ତାକୁ ବାହା ହେବାକୁ ଠିକ୍ କରିଥିଲା । ସେ ଝିଅର ଚିଠି ମନୁଆଁ ମତେ ଦେଖେଇ କହୁଥିଲା– ତାକୁ ସେ ବାହା ହେଇ ନପାରିଲେ, ଜୀବନ ଦେଇଦେବ' ।

ଚନ୍ଦୁର କଥା ମଝିରେ ଦଳେ ଟୋକା ମିଛ ମିଛ କହି ଠିଆ ହେଇ ପଡ଼ିଲେ । ସନିଆଁ ଚିତ୍କାର କରି ଉଠିଲା । 'ହଁ, ଚନ୍ଦୁ ମିଛ କହୁଛି । ମୋ ପୁଅ ନାଆଁରେ ସେ ବଦନାମୀ କରୁଛି । ମନୁଆଁ ଭଳି ଭଲ ପିଲା, ସେ ପୁଣି କୋଉ ଅଜଣା ଅଚିହ୍ନା ସହରୀ ଝିଅକୁ ଭଲ ପାଇବ । ମିଛ କଥା, ସେ ତା' ମାଆ ପାଖରେ କି ମୋ ପାଖରେ ଦିନେହେଲେ ଏକଥା ତ କହିନାହିଁ । ତୋ' ପାଖରେ ଏତେକଥା କେବେ କହିଲାରେ ଚନ୍ଦୁ' ?

ଏକ ସଙ୍ଗରେ ବହୁତ ଲୋକ କଥାବାର୍ତ୍ତା ହେବାରୁ ନିଶାପ କାମ ଆଉ ଚାଲି ପାରିଲା ନାହିଁ । ଗାଁ' ମୁଖିଆ ବିନୁମୁଣ୍ଡା ଯେତେ ଅନୁରୋଧ କଲେ ବି କେହି ସେଥିପ୍ରତି କର୍ଣ୍ଣପାତ କଲେନାହିଁ । ଅବସ୍ଥା ଅସମ୍ଭାଳ ହେଲା । ନିଶାପ ସଭା ଦେଖିବାକୁ ଆଉ ନିଶାପର ନିଷ୍ପତ୍ତି ଶୁଣିବାକୁ ଆଖପାଖ ଗାଆଁର ଆହୁରି କେତେଲୋକ ଆସି ଉଚ୍ଚା ଜାଗା ଦେଖି ବସିଥିଲେ । କେତେଜଣ ବୁଢ଼ାବୁଢ଼ୀ ନାତି ନାତୁଣୀଙ୍କୁ ସାଙ୍ଗରେ ଧରି ଚର୍ଚ୍ଚ ପାଖରେ ଥିବା ମହୁଲ ଗଛ ମୂଳେ ବସି ଟୁପୁରୁ ଟାପୁର ହେଉଥା'ନ୍ତି । କ୍ଲବ୍‌ର ପିଲାମାନଙ୍କୁ ଆଉ କିଏ ସମ୍ଭାଳେ ! ପରସ୍ପର ମଧ୍ୟରେ ଯୁକ୍ତିତର୍କ ପାଟିତୁଣ୍ଡ ଆଉ କଥା କଟାକଟିରେ ସମସ୍ତେ ବ୍ୟସ୍ତ । ସରପଞ୍ଚ ଶଙ୍କର ମୁଣ୍ଡା ବିରକ୍ତ ହେଇ କ'ଣ ଚନ୍ଦୁକୁ କହୁଥା'ନ୍ତି । କେହି କାହାର କଥା ଶୁଣିବାକୁ ପ୍ରସ୍ତୁତ ନଥା'ନ୍ତି ।

ହଠାତ ଦୁଇଜଣ ବଂଧୁକଧାରୀ ଅଚିହ୍ନା ଲୋକଙ୍କ ଉପସ୍ଥିତି ସମସ୍ତଙ୍କୁ ନିରବ କରିବାକୁ ବାଧ୍ୟକଲା । ଗାଆଁଲୋକେ ତଟସ୍ଥ ହେଇ ତାଙ୍କୁ ଚାହିଁ ରହିଲେ । ବୁଢ଼ାବୁଢ଼ୀମାନେ ନାତି ନାତୁଣୀଙ୍କୁ କାନିରେ ଘୋଡ଼େଇ ପକେଇ ତରବର ହେଇ ଲୁଚି ଲୁଚି ଘରକୁ ପଳେଇଗଲେ । ସନିଆଁ ବୋକାଙ୍କ ଭଳି ଆଁ'ଟା କରି

ସେ ଦୁଇଜଣଙ୍କୁ ଅନେଇଁ ରହିଲା । କେତେବେଳେ କ'ଣ ହେଇଯିବ, କିଏ କହିପାରିବ । ସରପଞ୍ଚ ଆଉ ଚନ୍ଦୁ ସେ ଲୋକ ଦୁଇଜଣଙ୍କ ପାଖକୁ ଯାଇ ଠିଆହେଲେ । ଗାଆଁ ମୁଖିଆ ବୁଢ଼ା ଦୂରରୁ ବସି ସବୁ ଘଟଣାକୁ ନିରୀକ୍ଷଣ କରି କେତେ କ'ଣ ଭାବିଲା ।

ଏହି ବନ୍ଧୁକଧାରୀ ଦି'ଜଣ ଅଚିହ୍ନା ଲୋକ ଯେ ମାଓବାଦୀ, ଏଥିରେ କାହାରି ସନ୍ଦେହ ନଥିଲା । ଏମାନେ ମଝିରେ ମଝିରେ ଏଇବାଟ ଦେଇ ଯାଆନ୍ତି । କଣ୍ଟ୍ରାକ୍ଟର, ଫରେଷ୍ଟର ଆଉ ଗାଁ' ମହାଜନଙ୍କ ସହିତ ତାଙ୍କର କାରବାର । କଣ୍ଟ୍ରାକ୍ଟର ଟଙ୍କା ପଇସା ଦେଇ ତାଙ୍କ ସହିତ ମିଳିମିଶି ଚଳେ । ତା' କାମଟା କେମିତି ନିର୍ବିଘ୍ନରେ ଶେଷ ହେଇଗଲେ ଗଲା । ସେତିକିଦିନ ପର୍ଯ୍ୟନ୍ତ ତାଙ୍କ ସହିତ କଣ୍ଟ୍ରାକ୍ଟରର ଦୁଷ୍ଟପ୍ରୀତି ଭାବ ରହିଥାଏ । ଗାଆଁ ମହାଜନ ଆଉ ଦୋକାନୀମାନେ ଏମାନଙ୍କୁ ବାକିରେ ଜିନିଷପତ୍ର ଦିଅନ୍ତି । ଭୟରେ ବାକିଟଙ୍କା ମାଗନ୍ତି ନାହିଁ । ଥରେ ଦୁବେ ମାରୁଓ୍ୱାଡ଼ି ବାକିଟଙ୍କା ନଦେଲେ, ଆଉ ଜିନିଷ ଦେବିନାହିଁ ବୋଲି କହିଥିଲା ଯେ, ତା'ପରଦିନ ତା' ପୁଅର ଶବ ଜଙ୍ଗଲରେ ମିଳିଲା । ସେହିଦିନଠାରୁ ଆଉ କୌଣସି ମାରଓ୍ୱାଡ଼ି ଦୋକାନୀ ଏମାନଙ୍କୁ ବାକି ଦେବାକୁ ମନା କରନ୍ତି ନାହିଁ । ଆଉ କେତେଜଣ ତାଙ୍କର ବେପାର ବଣିଜକୁ ଧୀରେ ଧୀରେ କମେଇ ଦେଇ କିଏ କୁଆଡ଼େ ପଳେଇ ଗଲେଣି । ଯିଏ ତାଙ୍କୁ ବାକି ଆଉ ମାଗଣାରେ ଜିନିଷ ଦେଉଛି, ସିଏ କ'ଣ ତା' ଘରୁ ଆଣିଦେବ, ଗାଆଁର ଲୋକଙ୍କଠାରୁ ସେହି ଟଙ୍କା କଳେବଳେ କଉଶଳେ ନେଉଛି । ତାକୁ ଆଜିକାଲି ଗରିବଙ୍କୁ ଶୋଷଣ ବୋଲି କହୁଛନ୍ତି ।

ଏହି ଦୁଇଜଣ ବନ୍ଧୁକଧାରୀ ପାଖ ବଜାରରେ ନିର୍ଭୟରେ ବୁଲାବୁଲି କରନ୍ତି । ମାସିକ ଚାନ୍ଦା ଆଦାୟ କରି ତାଙ୍କ ଦଳପତିଙ୍କୁ ଦିଅନ୍ତି । ସେମାନେ କହନ୍ତି– 'ଆମେ ଗରିବ ଆଦିବାସୀଙ୍କର ମଙ୍ଗଳ ପାଇଁ କାମ କରୁଛୁ । ବଣ ଜଙ୍ଗଲରେ ଦୁଃଖକଷ୍ଟ ସହି ରହୁଛୁ । ଆମକୁ ଖାଇବା ପିଇବା ବଂଚିବା ପାଇଁ ତ ଟଙ୍କା ଦରକାର । ତମେ ଦେବନାହିଁ ତ ଆଉ କିଏ ଦେବ ? ଭଲରେ ନଦେଲେ,

ଖରାପରେ ଦେବ । ବଂଗାଳି କଣ୍ଟ୍ରାକ୍ଟରଟା ଭୟକରି ଚାନ୍ଦାଟଙ୍କା ଥରେ ଦେଇଥିଲା । ତା'ପରେ ସେ କାମ ଅଧାରୁ ଛାଡ଼ି କୁଆଡ଼େ ଗଲା ଯେ, ତା'ର ପତ୍ତା ନାହିଁ । ତେଲୁଗୁ କଣ୍ଟ୍ରାକ୍ଟରଟି ସହିତ ତାଙ୍କର ଭଲ ଭାବରେ ବୁଝାମଣା ହୋଇଯାଇଛି । ତାଙ୍କୁ ଦେଖିବା ମାତ୍ରେ ଟଙ୍କା ଭର୍ତ୍ତିକରି ରଖିଥିବା ମାସିକ ଚାନ୍ଦା ଲଫାପାଟିକୁ ତାଙ୍କ ହାତକୁ ସେ ସୁନାପିଲା ଭଳି ବଢ଼େଇ ଦିଏ । ଆଉ ମାରଓ୍ୱାଡ଼ି କଣ୍ଟ୍ରାକ୍ଟରଟା ସହିତ ଥରେ ଅଧେ ତାଙ୍କର ଯୁକ୍ତିତର୍କ ହେଇଥିଲା । ସେ ତାଙ୍କୁ ପୁଲିସରେ ଧରେଇଦେବ ବୋଲି ଧମକେଇ ଥିଲା । କିନ୍ତୁ ତା'ପରେ କ'ଣ ହେଲା କେଜାଣି, ସେ ନିଜେ ମୋଟର ସାଇକେଲରେ ଚଢ଼ି ଜଙ୍ଗଲ ଭିତରକୁ ଯାଇ ନିୟମିତ ତାଙ୍କୁ ମାସିକ ଦେଇ ଆସୁଛି । ଏବେ ତା'ର ଆଉ କିଛି ଅସୁବିଧା ନାହିଁ । ଆଗରୁ ଥରେ ତା'ର ଗୋଟାଏ ଅଧା ତିଆରି ପୋଲକୁ ସେମାନେ ବୋମା ପକେଇ ଉଡ଼େଇ ଦେଇଥିଲେ ।

ଏଇ ମୋବାଇଲ୍ ଟେଲିଫୋନ୍‌ବାଲାଙ୍କ ପାଖରେ ବହୁତ ପଇସା ଅଛି । ସବୁ ଲାଭ ସେ ଏଇଠୁ ନେଉଛନ୍ତି; କିନ୍ତୁ ତାଙ୍କପାଇଁ ଟଙ୍କାଟିଏ ଦେବାକୁ କେହିନାହିଁ । ଲମ୍ବା ଲମ୍ବା ଟାଓ୍ୱାର ବସେଇ ଦେଇ କୁଆଡ଼େ ଦୂରେଇକି ରହୁଛନ୍ତି । ଫୋନ୍‌ରେ କଥାବାର୍ତ୍ତା ହେବେ । ବଡ଼ ବଡ଼ ସହରରେ ଅଫିସ୍ ଖୋଲି ବସିବେ । ଧରାଛୁଆଁ ଦେବେନାହିଁ । ତେଣୁ ଏମାନେ ତାଙ୍କର ଟାଓ୍ୱାରକୁ ବୋମାମାରି ଉଡ଼େଇ ଦେଉଛନ୍ତି । ଟାଓ୍ୱାର ଉଡ଼େଇଦେଲେ ବି ତାଙ୍କର ଅଫିସର କେହି ଆସି ତାଙ୍କ ସହିତ କଥା ହେଉନାହାନ୍ତି । ଫଳରେ ଏମାନଙ୍କର ରାଗ ତାଙ୍କ ଉପରେ ବଢ଼ି ବଢ଼ି ଚାଲିଛି ।

ପୁଲିସବାଲା, ଫରେଷ୍ଟ ଗାର୍ଡ଼ ଆଉ ଖବରଦାତାଙ୍କ ଉପରେ ଏମାନଙ୍କର ସବୁଠୁ ବେଶୀ ରାଗ । କିଛି ଗୋଟାଏ ଅଘଟଣ ଏମାନଙ୍କ ଦ୍ୱାରା ଘଟିଗଲେ, ସରକାର ଦଳେ ପୁଲିସ ପଠେଇ ଦେଉଛନ୍ତି । ସେମାନେ ଆସି ତାଙ୍କ ଉପରେ ଦମନଲୀଳା ଚଳାନ୍ତି । ଏମାନେ ସାମନା ସାମନି ହେଇଗଲେ, ଚାଲିଲା ଖଣ୍ଡଯୁଦ୍ଧ । ଏପଟରୁ ନହେଲେ ସେପଟରୁ ପୁଳାଏ ଲେଖାଁ ମରୁଛନ୍ତି । ତାଙ୍କର

ନେତାମାନଙ୍କୁ ଧରିନେଲେ କି ମାରିଦେଲେ, ଏମାନେ ପ୍ରତିଶୋଧ ପରାୟଣ ହୋଇ ବେଶ୍ କେତେଜଣ ପୁଲିସଙ୍କୁ ହତ୍ୟା କରୁଛନ୍ତି । ପୁଲିସଙ୍କ ଯିବା ଆସିବା ବାଟରେ ଲ୍ୟାଣ୍ଡ୍ ମାଇନ୍ ବିଛେଇ ତାଙ୍କ ଗାଡ଼ିକୁ ଉଡ଼େଇ ଦେଉଛନ୍ତି । ତାଙ୍କ ଭୟରେ ପୁଲିସବାଲା ଆଉ ଥାନାରେ ରହୁ ନାହାନ୍ତି କି କାହାରି ହାରି ଗୁହାରି ଶୁଣୁ ନାହାନ୍ତି । ମାଓବାଦୀମାନେ କହନ୍ତି– 'ଫରେଷ୍ଟ ଗାର୍ଡ଼ମାନେ ହଉଛନ୍ତି ବଣର ରଜା । ବଡ଼ ବଡ଼ କାଠଚୋରଙ୍କ ସାଙ୍ଗରେ ସଲାସୁତୁରା ହୋଇ ସେମାନେ ହାତ ଚିକ୍କଣ କରନ୍ତି । ଜାଳେଣି ପାଇଁ କି ଘର ତିଆରି ପାଇଁ କିଏ ଗୋଛାଏ କାଠ ନେଲାବେଳେ ତାକୁ ଧରି ତା'ଠାରୁ କୁରାଢ଼ି ଛଡ଼େଇ ନିଅନ୍ତି । ନିରୀହ ଦେଖି ତାକୁ ଭଲକି ପିଟନ୍ତି । ସୁବିଧା ଦେଖି ହାତଗୁଞ୍ଜା ନେଇ ତାକୁ ଛାଡ଼ି ଦିଅନ୍ତି । ଯଦି କିଏ ଯୁକ୍ତିତର୍କ କଲା, ତା' ନାଆଁରେ କେଶ୍ ଦେଇ ଦିଅନ୍ତି । ସେଇଥିପାଇଁ ତାଙ୍କର ଫରେଷ୍ଟ ଗାର୍ଡ଼ଙ୍କ ଉପରେ ରାଗ । ବଦମାସିଆ ଫରେଷ୍ଟ ଗାର୍ଡ଼ଙ୍କୁ ସୁବିଧା ଦେଖି ସେମାନେ ଖତମ୍ କରିଦିଅନ୍ତି । ତାଙ୍କ ଭୟରେ ଆଉ ଜଙ୍ଗଲକୁ ଫରେଷ୍ଟ ଗାର୍ଡ଼ ବି ଯାଉ ନାହାନ୍ତି ।

ଯେଉଁମାନେ ପଇସା ଲୋଭରେ ପଡ଼ି ମାଓବାଦୀଙ୍କ କାର୍ଯ୍ୟ କଳାପ ସଂପର୍କରେ ପୁଲିସକୁ ଖବର ଦିଅନ୍ତି, ତାଙ୍କୁ ଧରିନେଇ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ଦଣ୍ଡ ଦିଅନ୍ତି । ଏମାନେ ବଣ ଜଙ୍ଗଲରେ ଲୁଚିଛପି ରହନ୍ତି । ପୁଲିସ ଆସିଲେ ଆଡ୍ଡା ଛାଡ଼ି କେଉଁଆଡ଼େ ଚାଲି ଯାଆନ୍ତି । ଏମାନଙ୍କ ହାତରେ ମାରଣାସ୍ତ୍ର ଥିବାରୁ ସମସ୍ତେ ତାଙ୍କୁ ଡରନ୍ତି । ରାତିରେ ସେମାନେ ଗାଆଁ ଭିତରକୁ ଆସନ୍ତି, ଯୁବକ ଯୁବତୀମାନଙ୍କୁ ବୁଝେଇ ତାଙ୍କ ଦଳରେ ମିଶେଇବାକୁ ଚେଷ୍ଟା କରନ୍ତି । ନହେଲେ ଭୟ ଦେଖେଇ ଅପହରଣ କରି ନେଇ ଜଙ୍ଗଲ ଭିତରେ ତାଲିମ ଦିଅନ୍ତି । ଜୀବନକୁ ପାଣି ଛଡ଼େଇ ପୁଲିସ ସହିତ ଲଢ଼ନ୍ତି । ଏମାନଙ୍କୁ କିଏ ନ ଡରେ ? ବାଉଁଶକୁ ଘୂଣ ଘାଇଲା ଭଳି ଏମାନେ ଆମ ସମାଜକୁ ଖାଇ ସାରିଲେଣି ।

ଗାଆଁ ମୁଖିଆ ସହିତ ଅନ୍ୟମାନେ ଏହି ଦୁଇଜଣ ବନ୍ଧୁକଧାରୀଙ୍କୁ ଦେଖି ଆହୁରି କେତେ କ'ଣ ଭାବି ଚାଲିଥିଲେ ।

ଏଇମାନେ ତ ଆତଙ୍କ ସୃଷ୍ଟିକରି ସରକାରଙ୍କର ସବୁ ବିକାଶମୂଳକ କାମରେ ବାଧା ଦେଉଛନ୍ତି । ଆମପାଇଁ ସେମାନେ କାମ କରୁଛନ୍ତି ବୋଲି କହି ଲୋକଙ୍କୁ ଭୂଆଁ ବୁଲଉଛନ୍ତି । ଯା'ଙ୍କରି ପାଇଁ ରାସ୍ତା ତିଆରି କାମ ପୋଖରୀ ଖୋଳା କାମ, ଜଙ୍ଗଲ ସୁରକ୍ଷା କାମ ସବୁ ବନ୍ଦ ହେଇଗଲାଣି । ଏଇମାନେ ମଝିରେ ମଝିରେ ଲୁଚି ଛପିକରି ଗାଆଁରେ ପଶୁଛନ୍ତି । ଟଙ୍କା ପଇସା ଆଉ ବିଭିନ୍ନ ପ୍ରକାର ଲୋଭ ଦେଖେଇ ବେକାର ଯୁବକ-ଯୁବତୀମାନଙ୍କୁ ଭୁଲେଇ ନେଇ ଯାଉଛନ୍ତି । କେତେ ବାପାମାଆ ଯୁବା ବୟସର ପୁଅଝିଅଙ୍କୁ ହରେଇ ଦୁଃଖରେ କାଳାତିପାତ କରୁଛନ୍ତି । ବନ୍ଧୁକ ମୁନରେ ଏମାନେ ପୁଣି ଆମକୁ ସୁଖ-ସୁବିଧା ଦେବେ ! ଏକଥା ମନେ ପକେଇ ସନିଆଁ ରାଗରେ ଦାନ୍ତ କଟମଟ କରୁଥିଲା । କିନ୍ତୁ ତାଙ୍କ ହାତରେ ଥିବା ବନ୍ଧୁକକୁ ଭୟ କରି ସେ କିଛି କହି ପାରୁ ନଥିଲା । ସେ ଦେଖିଲା- ବନ୍ଧୁକଧାରୀ ଯୁବକ ଦୁଇଜଣ ହାତଠାରି ସମସ୍ତଙ୍କୁ ଚୁପ୍‌ଚାପ୍ ବସି ରହିବାକୁ କହିଲେ । କାହାରି ପାଟିରୁ କଥା ବାହାରୁ ନଥାଏ । ବୟସ୍କ ଦିଶୁଥିବା ବନ୍ଧୁକଧାରୀ ଜଣକ ସନିଆଁକୁ ପାଖକୁ ଡାକି କହିଲା- 'ତମ ପୁଅକୁ କେହି ଉଠେଇ ନେଇ ଯାଇ ନାହାନ୍ତି କି ଜବରଦସ୍ତ କରି ମାଓବାଦୀ ଦଳରେ ମିଶେଇ ନାହାନ୍ତି । ସେ ନିଜ ଇଚ୍ଛାରେ ଜଙ୍ଗଲ ଭିତରକୁ ଯାଇଛି । ଆମ ନେତା ଖୁସି ହେଇ ତମପାଇଁ ଦଶ ହଜାର ଟଙ୍କା ଆମ ହାତରେ ପଠେଇଥିଲେ । ତାକୁ ଚନ୍ଦୁଠାରୁ ନେଇଯିବ ।

ହଁ, ଆଉ ଗୋଟିଏ କଥା ମନେରଖ । ତମକୁ ସେକଥା କହିବାପାଇଁ ତମ ପୁଅ ଆମକୁ କହିଯାଇଛି । ସେ କାହିଁକି ଯାଇଛି, କେମିତି ଯାଇଛି, ସେକଥା ସବୁ ତମେ ଜାଣିପାରିବ, ତା' ପଢ଼ା ବହିଥାକରେ ଥିବା ଡାଇରିରୁ । ଆମ ହାତରେ ଆଉ ବେଶି ସମୟ ନାହିଁ । ଯାଅ ତା' ଡାଇରି ଖୋଲି ଦେଖ । ମିଛରେ ସରପଞ୍ଚ କି ଚନ୍ଦୁକୁ ଦୋଷ ଦେବନାହିଁ' ।

ଏତିକି କହି ସେ ଦୁଇଜଣ ବଂଧୁକଧାରୀ ମାଓବାଦୀ ଜଙ୍ଗଲ ଭିତରକୁ ଚାଲିଗଲେ ।

ନୂଆସାହି ଆଉ ମୁଣ୍ଡାସାହିରେ କୋକୁଆ ଭୟ ଖେଳେଇ ହେଇଗଲା । ଆଉ ନିଶାପ ହେବ କ'ଣ ? ସମସ୍ତେ ଘେରି ପଡ଼ିଲେ ସନିଆଁକୁ । ଗାଁ' ମୁଖିଆ କହିଲେ– 'ସନିଆଁ ଆଗ ଯାଇ ମନୁଆଁର ଡାଇରି ଦେଖୁ । ତା'ପରେ ଯାହା ବିଚାର ହେବ ।'

ଚନ୍ଦୁ ବଡ଼ ପାଟିରେ କହିଲା– 'ଭାଇ ! ତୁ ତ ଡାଇରି ପଢ଼ି ପାରିବୁ ନାହିଁ । ଶଙ୍କରକୁ ସାଙ୍ଗରେ ନେଇ ଯା', ସେ ପଢ଼ିଦେବ' ।

ସନିଆଁ ସାଙ୍ଗରେ ଚନ୍ଦୁ ଆଉ ସରପଞ୍ଚ ଶଙ୍କର ଚାଲିଲେ । ତାଙ୍କ ପଛେ ପଛେ ଗାଆଁର ଟୋକା ଦଳ ବି ସନିଆଁ ଘରେ ଯାଇ ପହଞ୍ଚିଗଲେ ।



# ପାଞ୍ଚ

ସନିଆଁ ଘର ଦୁଆରେ ଗାଁ'ଯାକର ଲୋକେ ଭିଡ଼ ଜମେଇଥିଲେ । ଚନ୍ଦୁ ଆଉ ସନିଆଁ ଯାଇ ମନୁଆଁର ବହିଥାକକୁ ଅଣ୍ଡାଳୁଥିଲେ । ସମସ୍ତଙ୍କ ମନରେ କୌତୂହଳ । କ'ଣ ଥାଇପାରେ ସେ ଡାଇରିରେ ! ପାଠଶାଠ ପଢ଼ିଥିବା ମନୁଆଁକୁ ସମସ୍ତେ ସମଝ୍‌ଦାର ବୁଦ୍ଧିଆ ପିଲା ବୋଲି ଜାଣନ୍ତି । ଥରେ କଲେଜ ଛୁଟିରେ ସେ ଗାଁ'କୁ ଆସିଥିଲା । ତା'ର ସୁନ୍ଦର ସୁଢ଼ଳ ଚେହେରା ଆଉ ଦେହର ଶକ୍ତିକୁ ଦେଖି କିଏ କେତେ ପ୍ରକାର ପ୍ରଶଂସା କରୁଥିଲେ । ସେ କହୁଥିଲା, ମୁଁ ମିଲିଟାରୀରେ ଚାକିରି କରିବି । ଦିନେ ରାତିରେ ଚର୍ଚ୍ଚ ପଢ଼ିଆରେ ତା' ସହିତ ଚାରି ପାଞ୍ଚଜଣ ମାଓବାଦୀଙ୍କ ଦେଖା ସାକ୍ଷାତ ହେଇଥିଲା । ସେମାନେ ତାକୁ ବିଭିନ୍ନ ପ୍ରଲୋଭନ ଦେଖେଇ ତାଙ୍କ ସମାଜର ଉନ୍ନତି ପାଇଁ ମାଓବାଦୀରେ ସାମିଲ ହେବାକୁ ନିମନ୍ତ୍ରଣ କରିଥିଲେ । ଯେଉଁମାନେ ଆଦିବାସୀମାନଙ୍କୁ ଶୋଷଣ କରୁଛନ୍ତି, ତାଙ୍କଠାରୁ ଟଙ୍କା ଲୁଟ୍‌କରି ଗରିବମାନଙ୍କୁ ବାଣ୍ଟିବାକୁ ତାଙ୍କର ଆଦର୍ଶ ବୋଲି ସେମାନେ ବୁଝେଇଥିଲେ । ତା'ଭଳି ଜଣେ ଦକ୍ଷ ଶିକ୍ଷିତ ପିଲା ତାଙ୍କର ସଭ୍ୟ ହେଲେ, ଅନ୍ୟମାନେ ମଧ୍ୟ ସେମାନଙ୍କ ପ୍ରତି ଆକର୍ଷିତ ହେବେ ବୋଲି କହିଥିଲେ । କୌଣସି ପ୍ରକାର ପ୍ରଲୋଭନ ବା ଆଦର୍ଶରେ ସେ ତରଳି ଯାଇ ନଥିଲା । ରୋକ୍ ଠୋକ୍ ତାଙ୍କ ମୁହଁରେ ଜବାବ ଦେଇଥିଲା– 'ନିଜ ଦେଶ ଭିତରେ ନିଜ ଲୋକଙ୍କୁ ବନ୍ଧୁକ ମୂନରେ ଭୟ ଦେଖେଇ ଆତଙ୍କ ସୃଷ୍ଟି କରିବା ଜଣେ ସଭ୍ୟ ମଣିଷର କାର୍ଯ୍ୟ ହୋଇ ନ ପାରେ' ।

ମନୁଆଁ ଭଳି ଯୋଗ୍ୟ ଯୁବକଟି କୌଣସି ପ୍ରକାର ସୁଖ ସୁବିଧା ପ୍ରଲୋଭନର ବଶବର୍ତ୍ତୀ ନ ହୋଇ ଶେଷରେ ସେ ତାଙ୍କୁ ସେଦିନ ଶୁଣେଇ ଦେଇଥିଲା– 'ଦେଶ ମାତୃକାର ସେବାରେ ଜଣେ ସୈନିକ ହୋଇ ପ୍ରାଣଦେବାକୁ ପସନ୍ଦ କରିବ ସିନା, ଏଭଳି ଘୃଣ୍ୟ ଦେଶଦ୍ରୋହୀ କାର୍ଯ୍ୟକୁ ଆପଣେଇ ନେଇ ପାରିବ ନାହିଁ' ।

ସେହି ମନୁଆଁ ପୁଣି ସ୍ୱଇଚ୍ଛାରେ ମାଓବାଦୀ ହେଇଗଲା । ଏ' କଥାକୁ କେହି ବିଶ୍ୱାସ କରିପାରୁ ନଥିଲେ । ଏହି ଘଟଣା ପଛରେ କିଛି ଗୋଟାଏ ବଡ଼ ଧରଣର ଚକ୍ରାନ୍ତ ବା ଷଡ଼ଯନ୍ତ୍ର ରହିଛି ବୋଲି କ୍ଲବ୍‌ର ଯୁବକମାନେ କୁହାକୁହି ହେଉଥା'ନ୍ତି । ସରପଞ୍ଚ ଶଙ୍କର ଆଉ ଚନ୍ଦୁମୁଣ୍ଡା ଏହି ଷଡ଼ଯନ୍ତ୍ରରେ ସଂପୃକ୍ତ ବୋଲି ସମସ୍ତଙ୍କ ସନ୍ଦେହ ଘେରରେ ସେମାନେ ରହିଥା'ନ୍ତି ।

ସନିଆଁ ବହିଥାକ ଆଡ଼େଇ ଆଡ଼େଇ ସେହି ଡାଇରିଟିକୁ ପାଇଗଲା । ଚନ୍ଦୁ ତା' ହାତରୁ ଝାମ୍ପିନେଇ ତରବର ହେଇ ଡାଇରି ମଲାଟ ଉଠେଇ ପକେଇବାରୁ ସମସ୍ତଙ୍କ ଆଖି ଲାଖି ରହିଗଲା ଗୋଟାଏ ସୁନ୍ଦରୀ ଝିଅର ଫଟୋ ଉପରେ । 'ଏଇ ଫଟୋଟି କାହାର' ? ସନିଆଁ ପାଟିରୁ ବାହାରି ପଡ଼ିଲା ।

ଚନ୍ଦୁ ହାତରୁ ଶଙ୍କର ଫଟୋଟିକୁ ନେଇ ତଳ ଉପର ଆଗ ପଛ ବାଆଁ ଡାହାଣ କରି ଦେଖି କହିଲା– 'ଇଏ ତ ଗୋଟାଏ ଫିଲ୍ମ ହିରୋଇନ୍‌ର ଫଟୋ । ବଂଗାଳି କି ହିନ୍ଦୀ ଫିଲ୍ମରେ ଏ' ଝିଅଟାକୁ ମୁଁ ଦେଖିଥିଲି' ।

ଚନ୍ଦୁ କହିଲା– 'ନାଇଁମ ! ଆମ ଓଡ଼ିଆ ଆଲ୍‌ବମ୍‌ରେ ପରା ଏଇ ଝିଅଟା ନାଚ କରୁଥିବାର ମୁଁ ଦେଖିଛି' ।

କ'ଣ ଗୋଟାଏ ଅପୂର୍ବ ଜିନିଷ ସନିଆଁ ଘରୁ ମିଳିଛି, ଜାଣିପାରି ଗାଆଁର ଟୋକାମାନେ ତାକୁ ଦେଖିବାକୁ ଉଦ୍‌ଗ୍ରୀବ ହେଇ ରହିଥା'ନ୍ତି ।

ଏ ହାତରୁ ସେ ହାତ ହେଇ ଫଟୋଟିରେ ଟିକିଟା ମଇଳା ଲାଗିଗଲାଣି । କିନ୍ତୁ କେହି ସେ ଫଟୋଟାର ଠିକ୍ ପରିଚୟ ଦେଇ ପାରୁ ନାହାନ୍ତି କି ଫଟୋଟା ସନିଆଁ ହାତକୁ ଫେରି ଆସି ପାରୁନାହିଁ ।

ଏଣେ ଡାଇରି ଭିତରେ ଆହୁରି ଚାରି ପାଞ୍ଚଟା ବିଭିନ୍ନ ପୋଜ୍‌ର ଫଟୋ ମିଳିଲାଣି । ଚନ୍ଦୁ, ଶଙ୍କର ଓ ସନିଆଁ ମିଶି ଗୋଟାଏ ଗୋଟାଏ ଫଟୋ ଦେଖୁଛନ୍ତି । ସନିଆଁ ପଚାରିଲା– 'ଏସବୁ ଫଟୋ କ'ଣ ଗୋଟିଏ ଝିଅର' ?

ଚନ୍ଦୁ କହିଲା, 'ହଁ ଭାଇ ! ବିଭିନ୍ନ ସମୟର ବିଭିନ୍ନ ଷ୍ଟାଇଲ୍‌ର ଫଟୋ, କିନ୍ତୁ ଗୋଟିଏ ଝିଅର । ଏ' ଝିଅ ବିଷୟରେ ମନୁଆଁ ତତେ କେବେ କିଛି କହିନାହିଁ ?

ମୁଣ୍ଡ ହଲେଇ ନାହିଁ କଲା ସନିଆଁ । ଚନ୍ଦୁ ହାତରୁ ହଠାତ୍ ଡାଇରିଟା ଖସି ପଡ଼ିଲା । ଚାରି ଛଅଖଣ୍ଡ ଚିଠି ତା' ଭିତରୁ ବାହାରି ପଡ଼ି ତଳେ ବୁଣି ହେଇ ପଡ଼ିଲା । ତାକୁ ଗୋଟେଇ ନେଲା ଚନ୍ଦୁ । ସେଥିରୁ ଗୋଟିଏ ଚିଠିକୁ ଶଙ୍କର ଖୋଲିବା ସମୟରେ କହିଲା– 'ଏଇ ଚିଠିଗୁଡ଼ାକୁ କିଏ ଦେଇଛି ଦେଖିବା । ଚିଠିର ଶେଷରେ ଲେଖାଯାଇଛି– । ଇତି । ତମର ହସକୁରୀ ଜହ୍ନ' ।

'ହସକୁରୀ ଜହ୍ନ' ସିଏ ପୁଣି କିଏ ? ଯାହାର ଫଟୋ ଆମେ ଦେଖିଲେ, ଇଏ କ'ଣ ସେଇ ହସକୁରୀ ଜହ୍ନ ' । ସମସ୍ତଙ୍କ ମୁହଁରେ ସେହି ଗୋଟାଏ ପ୍ରଶ୍ନ ।

ଶଙ୍କର ଗୋଟି ଗୋଟି କରି ସବୁ ଚିଠିର ଶେଷ ଧାଡ଼ିରେ ଲେଖିଥିବା– '। ଇତି । ତମର ହସକୁରୀ ଜହ୍ନ' ବାକ୍ୟଟିକୁ ପଢ଼ି ସମସ୍ତଙ୍କୁ ଶୁଣେଇ ଦେଲା । ସମସ୍ତେ ନିଶ୍ଚିତ ହେଲେ, ଏ' ଫଟୋଟି କୌଣସି ଫିଲ୍ମ ହିରୋଇନ୍‌ର ନୁହେଁ, ବରଂ ସହରରେ ରହୁଥିବା ମନୁଆଁର ସୁନ୍ଦରୀ ପ୍ରେମିକା ହସକୁରୀ ଜହ୍ନର ।

ସାହିଯାକର ଟୋକା ଗୋଟି ଗୋଟି କରି ଫଟୋ ଦେଖିଲେ । ସେମାନେ କୁହାକୁହି ହେଲେ, ଏତେ ସୁନ୍ଦରୀ ଝିଅର ଫଟୋ ଆଗରୁ ଆମେ କେହି ଦେଖି ନଥିଲୁ । ତା'ହେଲେ ଆମ ମନୁଆଁଟା ବଡ଼ ଭାଗ୍ୟବାନ । ସେ ସୁନ୍ଦରୀ ଝିଅର ମନକୁ କିଣି ନେଇ ପାରିଛି । ଏଇଟା ତ ଆମ ଗାଆଁ ପାଇଁ ଗର୍ବର କଥା । ଫଟୋକୁ ନେଇ ମୁଣ୍ଡାସାହି ଓ ନୂଆସାହିରେ ଅସରନ୍ତି ଚର୍ଚ୍ଚା ଚାଲିଲା । ଧୀରେ ଧୀରେ ସନିଆଁ ଦାଣ୍ଡରୁ ଭିଡ଼ କମି କମି ଆସିଲା ।

ରାତି ବଢ଼ି ଚାଲିଛି । ଗୋଟିଏ ପରେ ଗୋଟିଏ ଚିଠିକୁ ଖୋଲି ଶଙ୍କର ପଢ଼ି ଚାଲିଛି । ଚନ୍ଦୁ ଆଉ ସନିଆଁ ତା' ମୁହଁକୁ ଚାହିଁଛନ୍ତି– ଆଉ କ'ଣ ବାହାରିବ । ଏଇ ଅଳ୍ପ ସମୟ ଭିତରେ ଏତେ ଗୁଡ଼ାଏ ଘଟଣା ଘଟିଗଲାଣି । କେତେ ପ୍ରକାର ନୂଆ କଥା ଜଣା ପଡ଼ିଲାଣି । ଏସବୁ କଥାକୁ ଭାବି ଭାବି ସନିଆଁ ଏକ ପ୍ରକାର ବୋକା ପାଲଟି ଯାଇଛି । ତା'ର ସ୍ତ୍ରୀର ଆଜି ସକାଳୁ ମୃତ୍ୟୁ ହେଇଛି । ତା'ର ଶବ ସଂସ୍କାର ଆଜି ହେଇଛି । ଏକଥା ଯେମିତି ସିଏ ସବୁ ଭୁଲି ଯାଇଛି । ଏ' ସବୁ କ'ଣ କେମିତି ହେଲା ? ସେ କିଛି ବୁଝି ପାରୁନାହିଁ । ଶଙ୍କରର ଗୋଟାଏ ଭୟଙ୍କର ହସରେ ତା'ର ଭାବନାର ଖିଅ ଛିଡ଼ିଗଲା ।

ଶଙ୍କର କହିଲା– 'ବୁଝିଲ ଭାଇ ! ଏ' ଚିଠି ଗୁଡ଼ାକୁ ଯତ୍ନ କରି ରଖ । ଏଗୁଡ଼ାକ ଅସଲ ବେଳେ ଦରକାରରେ ଆସିବ । ଫଟୋ ଗୁଡ଼ାକୁ ସବୁ ଗୋଟାଏ ଜାଗାରେ ରଖ । ପୁଲିସଠୁ ଆରମ୍ଭ କରି କୋର୍ଟ କଚେରୀରେ ବି ଏସବୁ ଖୋଜା ପଡ଼ିବ' ।

ଶଙ୍କର କଥା ଶେଷ ନ ହେଉଣୁ, ସନିଆଁ ପଚାରିଲା, 'ମୋ ପୁଅ ଫେରିବ ବୋଲି ଏ' ଚିଠିରୁ କିଛି ଜଣାପଡୁଛି କି ? କେବେ ଫେରିବ, ତାକୁ କିଏ କେମିତି କେଉଁଠିକି ନେଇଯାଇଛି, ସେକଥା କିଛି ଲେଖା ହେଇଚି କି' ?

–ନାଇଁ, ସେକଥା ଏ' ଚିଠିରେ କିଛି ଲେଖା ହେଇନାହିଁ । ଏଗୁଡ଼ାକ ହଉଛି, ପୁଅ ଝିଅ ଭିତରେ ଦିଆନିଆ ହେଇଥିବା ପ୍ରେମପତ୍ର' । ସନିଆଁ କହିଲା– ଏଇ ପ୍ରେମପତ୍ରରୁ ମୋତେ କ'ଣ ମିଳିବ ? ସେ ଚିଠିଗୁଡ଼ାକୁ ରଖି ମୁଁ କ'ଣ କରିବି ? ସେ ଫଟୋ ଗୁଡ଼ାକୁ ରଖି କ'ଣ ପୂଜା କରିବି ? ଏବେ କ'ଣ କଲେ, ମୋ ପୁଅ ଫେରି ଆସିବ, ସେହି କଥା କହ ।' ଏତିକି କହୁ କହୁ ସନିଆଁ ମୁଣ୍ଡରେ ହାତଦେଇ ତଳେ ବସି ପଡ଼ିଲା ।

ଚନ୍ଦୁ ସବୁତକ ଚିଠି ଫଟୋ ଆଉ ଡାଇରିକୁ ଗୋଟେଇ ସାଇତି କରି ବହିଥାକରେ ରଖିଦେଲା । ସନିଆଁକୁ କହିଲା– 'ଆଜି ତୋ' ମୁଣ୍ଡ ବିଗିଡ଼ି ଯାଇଛି । ଏଘରେ ଏକୁଟିଆ ତୁ ରହି ପାରିବୁ ନାହିଁ । ଚାଲ ଆଜି ରାତିଟା ମୋ ଘରେ ମୋ ପାଖରେ ଶୋଇବୁ । ରାତି ହଉଛି ମଣିଷ ପାଇଁ ବଡ଼ ପରାମର୍ଶଦାତା । ଚିନ୍ତା କରିବାକୁ ସେ ସୁଯୋଗ ଦିଏ । ସେ ଆମକୁ ନିଶ୍ଚୟ କିଛି ଗୋଟାଏ ଉପାୟ ବତେଇ ଦେବ । ଏ' ଚିଠି, ଫଟୋ ଆଉ ଭବିଷ୍ୟତ ବିଷୟରେ ଆହୁରି ଅଧିକ ଆମକୁ ଚିନ୍ତା କରିବାକୁ ପଡ଼ିବ ।

ସନିଆଁକୁ ସାଙ୍ଗରେ ଧରି ଚନ୍ଦୁ ଓ ଶଙ୍କର ଘରୁ ବାହାରିଗଲେ ।



# ଛଅ

ଚନ୍ଦୁ ଘରେ ସନିଆଁକୁ ନିଦ ହେଲାନାହିଁ । ଅର୍ଦ୍ଧ ପାଗଳ ଭଳି ରାତିସାରା ସେ କ'ଣ ସବୁ ନିଜେ ନିଜେ ଗପି ଚାଲୁଥାଏ । ଚନ୍ଦୁ ସିନା ବିଛଣାରେ ପଡ଼ି ରହିଥାଏ, କିନ୍ତୁ ତା'ର ମନ ଧ୍ୟାନ ସନିଆଁ ଉପରେ ଥାଏ । ମଝିରେ ମଝିରେ କହୁଥାଏ, ଭାଇ ! ଏବେ ଶୋଇପଡ଼ । ରାତି ବହୁତ ହେଲାଣି । ଚନ୍ଦୁର କଥା ତା' ଉପରେ କିଛି ପ୍ରଭାବ ପକାଉ ନଥାଏ । ସେ କେତେବେଳେ ବିଛଣାରେ ବସି ହାତଯୋଡ଼ି କାହାକୁ ପ୍ରାର୍ଥନା କରୁଥାଏ ତ, ପୁଣି କେତେବେଳେ ଶୁକ୍ରୁରୀ ବୁଢ଼ୀ ସହିତ କଥା ହେଲାପରି କ'ଣ ସବୁ କହି ଚାଲିଥାଏ ।

ଚନ୍ଦୁ ଏଥର ବତୀ ଜଳେଇଲା । ସନିଆଁ ପାଖକୁ ଯାଇ ତା' ବିଛଣାରେ ବସି କହିଲା, 'ଭାଇ ! ତୁ ଏମିତି ପାଗଳ ପରି ହେଲେ ଦେହ ଖରାପ ହେଇଯିବ । ବଡ଼ ପୁଅଟା ତ ମଲା । ସାନପୁଅ ଗଲା, ପୁଣି ଭାଉଜ ବି ଚାଲିଗଲା । ତୁ ଏମିତି ହେଲେ, ବଞ୍ଚିବୁ କେମିତି' ?

ଚନ୍ଦୁ କଥା ଶୁଣି ସନିଆଁ ଭୋ ଭୋ ହେଇ ପିଲାଙ୍କ ଭଳି କାନ୍ଦି ଉଠିଲା । ସନିଆଁ କାନ୍ଦିବା ଚନ୍ଦୁ ଆଗରୁ କେବେ ଦେଖି ନ ଥିଲା । ସେ ଦେଖିଛି, ତା' ଭାଇ ଦେହରେ ଗୋଟାଏ ହାତୀର ବଳ । ଗୋଟାଏ କୁରାଢ଼ି କାନ୍ଧରେ ପକେଇ ସେ ଜଙ୍ଗଲ ଭିତରେ ଚାଲି ଯାଉଥିଲେ, ମଣିଷଖିଆ ବାଘ ବି ତା' ବାଟ ଛାଡ଼ିଦିଏ । ଘଣ୍ଟାକ ଭିତରେ କେଡ଼େ ବଡ଼ ବଡ଼ ଦାରୁକୁ କାଟି ତଳେ ଶୋଇ ପକାଏ । ମୁଣ୍ଡାସାହିର କାହାର କେତେବେଳେ ବିପଦ ପଡ଼ିଲେ, ତାକୁ ହିଁ ଖୋଜାପଡ଼େ । ସନିଆଁ ଭାଇ ଗାଆଁରେ ଥିଲେ, ବଣୁଆ ହାତୀ ବି ଗାଆଁକୁ ପଶନ୍ତି ନାହିଁ ବୋଲି ଗାଆଁ ଲୋକେ କହନ୍ତି । ଆଜି ସେହି ସନିଆଁ ଭାଇ କେଡ଼େ ଅସହାୟ, କେତେ ଦୁର୍ବଳ ହେଇପଡ଼ିଛି । ତାକୁ କୋଳକୁ ଟାଣିଆଣି ଚନ୍ଦୁ କହିଲା– 'ଭାଇ ! ମୋତେ ଦୁଃଖ କରନା । ମୋତେ ଲାଗୁଛି, ମନୁଆଁ ନିଶ୍ଚୟ ଫେରି ଆସିବ । କାଲି ସକାଳୁ ତୁ ମୋ ସାଙ୍ଗରେ କେନ୍ଦୁଝର ଚାଲ । ମୋର

ଜଣେ ଚିହ୍ନା ଓକିଲ ଅଛି । ତା'ଠାରୁ ପରାମର୍ଶ ନେବା, ଚିଠି ପଢ଼େଇବା । ମାଓବାଦୀମାନେ ଯାହା କହିଥିଲେ ସେ କଥା ବି କହିବା । ତା'ପରେ ଆମକୁ କ'ଣ କରିବାକୁ ପଡ଼ିବ, ସେକଥା କରିବା । ଏମିତି ହତାଶ ହେଲେ କିଛି ହେଇପାରିବ ନାହିଁ । ବିପଦ ବେଳେ ଧୈର୍ଯ୍ୟ ଧରିବା ଦରକାର ।'

ଏମିତି ଏମିତି ରାତି ପାହିଗଲା । ଚନ୍ଦୁ ଯାଇ ସରପଞ୍ଚଠାରୁ ମୋଟର ସାଇକେଲ ମାଗିନେଇ ଆସିଲା । ସନିଆଁକୁ ସାଙ୍ଗରେ ଧରି କେନ୍ଦୁଝରରେ ପହଞ୍ଚିଲା । ଚନ୍ଦୁ ତା'ର ଚିହ୍ନା ଓକିଲ ଘରକୁ ସିଧା ପଶିଗଲା । ସନିଆଁ ବିକଳ ମନ ନେଇ ଦାଣ୍ଡ ଦୁଆରେ ଠିଆ ହୋଇ ରହିଥାଏ । ଓକିଲଙ୍କ ପାଖରେ ରହିଥିବା କିରାଣୀ ଜଣକ ଚନ୍ଦୁ ହାତରୁ ଚିଠିଗୁଡ଼ିକ ନେଇ ପଢ଼ିଲେ । ଫଟୋ ଗୁଡ଼ାକୁ ଗୋଟି ଗୋଟି କରି ଭଲକି ଦେଖି କହିଲେ, 'ଏ ଝିଅଟାକୁ ତ ମୁଁ ଆଗରୁ କେଉଁଠି ଦେଖିଲା ପରି ଲାଗୁଛି । ହଁ- ହଁ ମନେ ପଡ଼ିଲା । ଅଳ୍ପଦିନ ଆଗରୁ ଖବର କାଗଜରେ ଏଇ ଝିଅର ଫଟୋଟା ବାହାରିଥିଲା । ଏ' ଝିଅର ନାଆଁ କ'ଣ କହିଲ ? ଚନ୍ଦୁ କହିଲା-'ଆଜ୍ଞା ଚିଠିରେ ତ ଲେଖା ହେଇଛି- ହସକୁରୀ ଜହ୍ନ, ସେଇୟା ହେଇଥିବ ।'

ଓକିଲଙ୍କ କିରାଣୀ ଠୋ-ଠୋ କରି ହସି କହିଲେ, 'ତମେ ବୋକା ବୋଲି ମତେ ବି ବୋକା ଭାବିଲ ନା' କ'ଣ ? ପ୍ରେମପତ୍ରରେ ଝିଅମାନେ ଛଦ୍ମନାମ ଲେଖନ୍ତି । ଏମିତି ଝିଅର ନାଆଁ କିଏ କେଉଁଠି ଦେଇଥିବାର ତମେ ଆଗରୁ କେବେ ଶୁଣିଛ ? ଝିଅର ଅସଲ ନାଆଁଟା ଆଉ କିଛି ଥିବ । ହଉ ! ଓକିଲ ସାର୍ ଚାମ୍ବରକୁ ଆସନ୍ତୁ, ସେ ଯାହା କହିବେ । ମୁଁ ସବୁ କାଗଜପତ୍ର ଠିକ୍ କରି ଦେଉଛି ।'

କିଛି ସମୟ ପରେ ଓକିଲ ବାବୁ କେଡ଼େ ଥାଟ୍‌ରେ ଚାମ୍ବର ଭିତରକୁ ପଶିଲେ । ସନିଆଁ ଦାଣ୍ଡ ଦୁଆରେ ଠିଆ ହେଇ ମୁଣ୍ଡ ନୁଆଇଁ ପ୍ରଣାମ କଲା । ମଳିମୁଣ୍ଡିଆ ଲୋକଟା ପ୍ରତି ତାଙ୍କର ଦୃଷ୍ଟି ପଡ଼ିଲା ନାହିଁ । କିରାଣୀ ଜଣକ କାଗଜପତ୍ର, ଫଟୋ ଓ ଚିଠି ନେଇ ଟେବୁଲ ଉପରେ ରଖିଥିଲେ ।

ଓକିଲବାବୁ ବହୁତ ସମୟ ଧରି ଫଟୋଗୁଡ଼ାକୁ ଖୁବ୍ ଭଲ ଭାବରେ ନିରୀକ୍ଷଣ କରି ଦେଖୁଥା'ନ୍ତି । ଗୋଟିଏ ପରେ ଗୋଟିଏ ଚିଠିକୁ ଖୋଲି ପଢ଼ି ବେଶ୍ ମଜା ଉଠାଉଥା'ନ୍ତି । ଚନ୍ଦୁ ତାଙ୍କୁ ନମସ୍କାର ଜଣାଇ ସାରି ଚାମ୍ବର ଦୁଆରେ ଠିଆ ହୋଇଥାଏ । ସେତେବେଳକୁ ଚନ୍ଦୁ ଧୈର୍ଯ୍ୟ ହରେଇ ସାରିଲାଣି । ସେ କହିଲା– 'ସାର୍ ! ଏ' କେସ୍‌ଟା ଆମର ।'

ଚମକି ପଡ଼ିଲେ ଓକିଲ ବାବୁ । ସେ ଚିଠି ଆଉ ଫଟୋ ଭିତରେ ଏମିତି ବିଭୋର ହୋଇ ପଡ଼ିଥିଲେ ଯେ, ତାଙ୍କ ଦୁଆରେ କେହି ଜଣେ ଠିଆ ହେଇ ତାଙ୍କୁ ଦେଖୁଛି, ସେକଥା ଜାଣି ପାରି ନଥିଲେ । ପ୍ରକୃତିସ୍ଥ ହେଇ ସେ କହି ପକେଇଲେ– 'ହଁ ଚନ୍ଦୁ ! ଏ' ସବୁ ଜିନିଷ ପାଇଲ କେଉଁଠୁ ? ଇଏ ଝିଅଟି କିଏ କିରେ, ଚିଠି ଗୁଡ଼ାକରେ ଯାହା ହେଇଛି ନା'– ଏହାକୁ ଧରି ଗୋଟାଏ ସୁନ୍ଦର ଉପନ୍ୟାସ ଲେଖି ହେଇଯିବ । ଖାଲି ଲେଖିବାବାଲା ହେଲେ ହେଲା ।'

ଦାଣ୍ଡ ଦୁଆର ଆଡ଼କୁ ହାତ ବଢ଼େଇ ଚନ୍ଦୁ କହିଲା– 'ସିଏ ହେଉଛି ମୋ ଭାଇ ସନିଆଁ । ତା' ପୁଅ ମନୁଆଁ ଡାଏରିରେ ଇଏ ସବୁ ଚିଠି ଆଉ ଫଟୋ ଥିଲା ।'

ଓକିଲ ବାବୁ ମୁଣ୍ଡ ହଲେଇ କହିଲେ, 'ହୁଁ, ତା' ପୁଅ ନାଆଁଟା ତେବେ ମନୁଆଁ, କିନ୍ତୁ ମାନସକୁ ଏସବୁ ଚିଠି ଲେଖା ଯାଇଛି । ମାନସ ପୁଣି କିଏ ?'

ଚନ୍ଦୁ କହିଲା– 'ଆଜ୍ଞା ! ମୋ ପୁତୁରାର ସ୍କୁଲ ନାଆଁ ହେଉଛି ମାନସ । ଆମେ ତାକୁ ଶ୍ରଦ୍ଧାରେ ମନୁଆଁ ବୋଲୁ ଡାକୁ ।'

'ହଉ । ମୁଁ ସବୁ କାଗଜପତ୍ର ଷ୍ଟଡ଼ି କରିବି । ଇଏତ ବଡ଼ ଜଟିଳ କେସ୍ । ମୋ କିରାଣୀବାବୁଙ୍କ ପାଖରେ ତିନିଶହ ଟଙ୍କା ଦେଇ ଯା' । ମୁଁ ତାଙ୍କଠାରୁ ସବୁକଥା ବୁଝିନେବି । ମୁଁ ଖବର ଦେଲେ ପୁଣି ଟଙ୍କା ଧରି ଆସିବ । ବୁଝିଲ' ?

ଓକିଲଙ୍କ କଥା ନ ସରୁଣୁ ଚନ୍ଦୁ କହିଲା– 'ଆଜ୍ଞା ! ଏବେଯାଏ ମୁଁ ତ କାହାରିକୁ କିଛି କହିନାହିଁ । ଆପଣ କିରାଣୀବାବୁଙ୍କଠାରୁ କେମିତି କ'ଣ ବୁଝିନେବେ ?'

'ହଉ । କୁହ, କଣ ହେଇଛି ? ତା' ବାପାକୁ ଏଠିକି ଡାକ । ସେ କହୁ' ।

ସନିଆଁ ଭିତରକୁ ଆସି ହାତଯୋଡ଼ି କାନ୍ଦ କାନ୍ଦ ହେଇ ତା'ର ସବୁ ଦୁଃଖ କାହାଣୀ ବର୍ଣ୍ଣନା କରିଦେଲା । ଓକିଲଙ୍କ ପାଦତଳେ ପଡ଼ି ନେହୁରା ହେଇ କହିଲା– 'ବାବୁ ! ମୋ ପୁଅ ମନୁଆଁକୁ ମାଓବାଦୀଙ୍କ କବଳରୁ ମୁକୁଳେଇବା ବ୍ୟବସ୍ଥା କରିଦିଅନ୍ତୁ । ଏଇ ଚିଠି ଆଉ ଫଟୋକୁ ଦେଖି କହନ୍ତୁ– ମୋ ପୁଅ ଏବେ ଅଛି କେଉଁଠି' ?

ମାଓବାଦୀଙ୍କ ନାଆଁ ଶୁଣି ଓକିଲବାବୁ ଅନ୍ୟମନସ୍କ ହେଇଗଲେ । ସେ କହିଲେ– 'କିରେ ଚନ୍ଦୁ ! ପ୍ରେମ ଚିଠିଗୁଡ଼ାକୁ ଆଣି ମାଓବାଦୀ କଥା କ'ଣ କହୁଛି ତୋ' ଭାଇ । ଏ' ଝିଅ ସହିତ ମାଓବାଦୀଙ୍କ ସମ୍ପର୍କ କ'ଣ ?'

ଚନ୍ଦୁ ସବୁ କଥା ଆମୂଳଚୂଳ ବର୍ଣ୍ଣନା କରିଗଲା । ସନିଆଁ କେବଳ ହଁ ଆଜ୍ଞା, ହଁ ଆଜ୍ଞା ମଝିରେ କହୁଥାଏ । ଓକିଲବାବୁ ନିର୍ନିମେଷ ଦୃଷ୍ଟିରେ ଚନ୍ଦୁ କଥାକୁ ଶୁଣି ଯାଉଥିଲେ । ମଝିରେ ମଝିରେ ସେ ଝିଅଟାର ଫଟୋଟାକୁ ଏପଟ ସେପଟ କରୁଥା'ନ୍ତି । ଚିଠିଗୁଡ଼ାକୁ ତଳ ଉପର କରୁଥା'ନ୍ତି । ଶେଷରେ କହିଲେ, 'ଏବେ ମୁଁ ସବୁକଥା ଠିକ୍ ଭାବରେ ବୁଝିଗଲି । ଏଇଟା ଗୋଟାଏ ଭୟଙ୍କର ଷଡ଼ଯନ୍ତ୍ର । ତମେ ଗୋଟାଏ କାମକର । ଖିଆପିଆ ସାରି ସଂଜ ବେଳକୁ ଆସ । ମୁଁ ୟା' ଭିତରେ କେତେଟା ଜିନିଷ ଇନ୍‌କ୍ୱାରୀ କରି ଦେଉଛି ।'

ସନିଆଁର ଖାଇବା ପିଇବା ତ ଦୂରର କଥା, କାଲିଠାରୁ ଚନ୍ଦୁ ପେଟକୁ ବି ପାଣି ଟୋପାଏ ଯାଇନାହିଁ । ଏଣେ ଓକିଲ ଦୁଆରେ ତା'ର ଦିନଟା ଗଲାଣି । କିଛି କାମ ବି ହେଇ ପାରିନାହିଁ । ସବୁ ସେହି ଭଗବାନଙ୍କ ଇଚ୍ଛା ଭାବି ଦୁଇଭାଇ ଓକିଲଙ୍କ ଚାମ୍ୱର ପାହାଚରୁ ଓହ୍ଲେଇ ଆସୁଥିଲେ । ଚନ୍ଦୁକୁ ଶୁଣାଗଲା, ମୋବାଇଲ୍

ଫୋନ୍ ଉଠାଇ କଥାହେଲେ ଓକିଲ ବାବୁ । 'ହ୍ୟାଲୋ ! ହଁ ହଁ, ମୁଁ ଓକିଲ ଚନ୍ଦ୍ରଶେଖର ମହାପାତ୍ର କହୁଛି । ଆପଣଙ୍କ ଝିଅର ଖବର କିଛିମାତ୍ରାରେ ମୁଁ ପାଇଛି । ଆପଣ ଯଥାଶୀଘ୍ର ସମ୍ଭବ ମୋତେ ଚାମ୍ବରରେ ଆସି ଦେଖା କରନ୍ତୁ ।

ହଁ ଶୁଣନ୍ତୁ ମିଶ୍ରବାବୁ ! ସେ କାଗଜପତ୍ର ବି ସାଙ୍ଗରେ ନେଇ ଆସିଥିବେ । ଖବର କାଗଜ କଟିଂଟାକୁ ମନେକରି ସାଙ୍ଗରେ ନିଶ୍ଚୟ ଆଣିଥିବେ । ମୋତେ ଆଉଥରେ କହିଲେ, ଆପଣଙ୍କ ଝିଅର ପୂରା ନାଆଁଟା କ'ଣ ।

–ଓହୋ ! ରୁହନ୍ତୁ, ମୁଁ ଟିକେ ଲେଖି ରଖେ । ହଁ ରତ୍ନପ୍ରଭା ମିଶ୍ର । କିନ୍ତୁ..... ତାକୁ କ'ଣ କେହି 'ହସକୁରୀ ଜହ୍ନ' ବୋଲି ଡାକନ୍ତି କି ?

–ଆଚ୍ଛା ଆଚ୍ଛା । ହଉ ! ଖାଲି 'ଜହ୍ନ' ବୋଲି ଶ୍ରଦ୍ଧାରେ ଆପଣ ତାକୁ ଡାକନ୍ତି । ହଉ ବୁଝି ହେଇଗଲା । ଆପଣ ଯେତେଶୀଘ୍ର ସମ୍ଭବ ମୋ ଚାମ୍ବରରେ ପହଞ୍ଚିବାକୁ ଚେଷ୍ଟା କରନ୍ତୁ । ମୁଁ ସବୁକଥା ଚାମ୍ବରରେ କହିବି । ବ୍ୟସ୍ତ ହୁଅନ୍ତୁନି ।

ଫୋନ୍ ସୁଇଚ୍‌କୁ ଟିପି ବନ୍ଦ କରିଦେଲେ ଓକିଲବାବୁ । ମୁଣ୍ଡରେ ହାତରଖି ପୁଣି ଥରେ ଫୋନ୍ ଉଠେଇ କହିଲେ, 'ହ୍ୟାଲୋ ! କେନ୍ଦୁଝର କଲେଜର ପ୍ରିନ୍ସିପାଲ୍ କହୁଛନ୍ତି । ଆଜ୍ଞା ନମସ୍କାର । ମୁଁ କୋର୍ଟରୁ ଓକିଲ ଚନ୍ଦ୍ରଶେଖର ମହାପାତ୍ର କହୁଥିଲି । ଆପଣଙ୍କ ସାହାଯ୍ୟ ଟିକେ ମୋତେ ଆଇନ୍‌ରେ ସହାୟତା ପାଇଁ ଦରକାର ପଡୁଛି । ଆପଣଙ୍କ କଲେଜରେ ଜଣେ ଛାତ୍ରୀ ରତ୍ନପ୍ରଭା ମିଶ୍ର ଆଉ ମାନସ କୁମାର ମୁଣ୍ଡା ନାମକ ଜଣେ ଛାତ୍ର ପି.ଜି. କରୁଥିଲେ । ତାଙ୍କର ଡିଟେଲ ଇନ୍‌ଫରମେସନ୍ ଟିକେ ଦରକାର । ମାନେ ସେମାନଙ୍କର ବାଇଓ ଡାଟା । କେବେ ନାମ ଲେଖାଇଥିଲେ, କେବେ କଲେଜ ଛାଡ଼ିଲେ । ସେମାନଙ୍କର କେରିୟର କେମିତି ଥିଲା । ସେମାନେ ପାସ୍ ସାର୍ଟିଫିକେଟ ନେଇ ଯାଇଛନ୍ତି କି ନାହିଁ । ସେ ଦୁଇଜଣଙ୍କ ଭିତରେ କିଭଳି ସଂପର୍କ ଥିଲା । ଇତ୍ୟାଦି ଇତ୍ୟାଦି.... ।

–ହଉ ହଉ, ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁ ନାହିଁ । ଯାହା ଯେତିକି ସମ୍ଭବ ଆମକୁ ସୂଚନା ଦେବେ । ମୁଁ ମୋର କିରାଣୀ ବାବୁଙ୍କୁ ପଠଉଛି । ଟିକେ ସହଯୋଗ କରିବେ ।

ଫୋନ୍‌ଟାକୁ ରଖିଦେଇ ଓକିଲବାବୁ ନିଜକୁ ନିଜେ କହି ଚାଲିଲେ, 'ହେଃ ! ପ୍ରିନ୍ସପାଲ୍ ହେଇଛନ୍ତି, ପିଲାଙ୍କ ବିଷୟରେ କିଛି ଖବର ରଖୁନାହାନ୍ତି । ସେଇଟା ଗୋଟାଏ କଲେଜ ନା' ପିକ୍‌ନିକ୍ ପାର୍କ ହେଇଛି । ପାଠ ପଢ଼ିବା ବଦଳରେ ମଜା ମଉଜ ପ୍ରେମ କରିବାକୁ ପିଲାମାନେ କଲେଜ ଯାଉଛନ୍ତି । ଆଉ ଏମାନେ ତାଙ୍କୁ ସୁଯୋଗ ଦେଉଛନ୍ତି ।'

ଓକିଲ ବାବୁଙ୍କ ପାଟିଶୁଣି କିରାଣୀବାବୁ ଚାମ୍ବର ଭିତରକୁ ପଶି ଆସିଲେ । ତାକୁ ଦେଖି ଓକିଲବାବୁ କାଗଜ ଖଣ୍ଡିଏ ବଢ଼େଇଦେଇ କହିଲେ, 'ଯାଅ, ଯେମିତି ହେଲେ କଲେଜରୁ ଏତିକି ଇନ୍‌ଫର୍ମେସନ୍ ଧରିକି ଆସିବ ।'

କିରାଣୀ ବାବୁ ମୋଟର ସାଇକେଲ ଚଲେଇ କଲେଜ ଆଡ଼କୁ ଚାଲିଲେ । ଏ' ଦୁଇଭାଇ ଦୁଆରେ ଠିଆହେଇ ବିକଳ ମନରେ ତାଙ୍କ ଯିବା ବାଟକୁ ଅନେଇ ଭାବୁଥିଲେ– ଏ' ସବୁ କ'ଣ ହେଉଛି ? ସେମାନେ ଗୋଟାଏ ଛୋଟ ଖାଲରୁ ଗଡ଼ି ଗଡ଼ି ଯାଇ ଆଉ ଗୋଟାଏ ବଡ଼ ଖାଲରେ ପଡ଼ିବାକୁ ଯାଉ ନାହାନ୍ତି ତ !

ସନିଆଁ କହିଲା, 'ଚନ୍ଦୁରେ ! ମୋ' ଗୋଡ଼ ହାତରେ ଆଉ ବଳ ନାହିଁ । ତୁ ଯା– କ'ଣ ଦିଇଟା ଖାଇଦେଇ ଆସିବୁ । ମୋ ପାଇଁ ଗୋଟାଏ ପାଉଁରୁଟି ନେଇ ଆସିବୁ । ଏଇଠି କଳରେ ତ ପାଣି ଆସୁଛି । ପିଇଦେବି । ତୁ ଯା' । ମୁଁ ଏଇଟି ଓକିଲବାବୁଙ୍କ ଦୁଆରେ ବସିଛି ।'

ଚନ୍ଦୁ ଚାଲିଗଲା ପରେ ଗୋଟାଏ ଚକ୍‌ଚକିଆ ଦାମୀ କାର୍ ଆସି ଓକିଲ ବାବୁଙ୍କ ଦୁଆରେ ଠିଆହେଲା । ତା' ଭିତରୁ ଜଣେ ଗୋରା ତକ୍‌ତକ୍ ସାହେବ ଭଳି ଲୋକ ବାହାରିଲେ । ତାଙ୍କ ପଛେ ପଛେ ତାଙ୍କ ମେମ୍ ସାହେବ ଆଉ ଜଣେ ଝିଅ । ଲାଗୁଛି ଝିଅଟା ସ୍କୁଲ୍‌ରେ ପାଠ ପଢୁଛି ।

ସେମାନଙ୍କୁ ଦେଖି ସନିଆଁ ଠିଆ ହେଇ ପଡ଼ିଲା । ସାହେବଙ୍କୁ ନମସ୍କାରଟିଏ ହେଇ ପଡ଼ିଲା ସିନା, ହେଲେ ମୁଣ୍ଡ ଟେକି ମେମ୍ ସାହେବଙ୍କୁ ଚାହିଁ ପାରିଲା ନାହିଁ । କିନ୍ତୁ ଝିଅଟିର ମୁହଁକୁ ଦେଖି ସେ ଅବାକ୍ ହେଇଗଲା । ଠିକ୍ ସେଇ ଝିଅର ଫଟୋ ପାଖାପାଖି ତା'ର ଚେହେରା । ତା'ରି ଭଳି ହସ ହସ ଗୋଲ

ମୁହଁ । ଓଠ ମୁହଁର ଗଢ଼ଣ ନିଖୁଣ । ଗୋଲାପ ପାଖୁଡ଼ା ଭଳି ଓଠ, ଚକ୍‌ଚକ୍ ଧଳାଦାନ୍ତ । ପାଦ ଦୁଇଟି ଲକ୍ଷ୍ମୀପାଦ ପରି ଦିଶୁଛି ।

ସେମାନେ ଅତ୍ୟନ୍ତ ବ୍ୟସ୍ତ ଥିଲାପରି ଲାଗୁଥିଲା । ତରବର ହୋଇ ସେମାନେ ଚାମ୍ବର ଭିତରକୁ ପଶିଗଲେ । ଓକିଲବାବୁ ତାଙ୍କ ଆସିବା ବାଟକୁ ଚାହିଁ ରହିଥିଲେ । ତାଙ୍କ ପାଇଁ କଫି ମଗେଇଲେ । ପ୍ରଥମେ ସେ ତାଙ୍କ ଝିଅ ଫଟୋ ବାହାରିଥିବା ଖବର କାଗଜ କଟିଂ ଆଉ କାଗଜପତ୍ର ତାଙ୍କଠାରୁ ମାଗିନେଇ ଭଲକରି ଦେଖି କହିଲେ– 'ଡକ୍ଟର ମିଶ୍ର ! ଆପଣଙ୍କ ଝିଅ କାହାକୁ ଭଲ ପାଉଥିଲା ଏବଂ ମାନସ ବୋଲି ପିଲାଟି ସହିତ ତା'ର କି ସମ୍ପର୍କ ମୋତେ ଆଗ କହିବେ କି' ?

–'ମାନସ ! ଆପଣ କୋଉ ମାନସ କଥା କହୁଛନ୍ତି' ? ଚିତ୍କାର କରି ଉଠିଲେ ଡକ୍ଟର ମିଶ୍ରଙ୍କ ପତ୍ନୀ ।

–'ରୁହନ୍ତୁ ମାଡ଼ାମ୍ । ବ୍ୟସ୍ତ ହେବାର କିଛି ନାହିଁ । ମୋ ପାଖରେ ଅନେକ ତଥ୍ୟ ରହିଛି । ସେଗୁଡ଼ିକ ସହିତ ଆପଣଙ୍କ ଅଭିଯୋଗ ମିଳୁଛି କି ନାହିଁ, ତାକୁ ହିଁ ମୁଁ ଆଗ ମିଳେଇ ନେଉଛି । ଏଇଟା କୋର୍ଟ–କଚେରୀ ନୁହେଁ ଯେ, କଥାଟା ତୁଣ୍ଡରୁ ବାହାରିଗଲେ ରେକର୍ଡ଼ ହେଇଯିବ । ବି ରିଲାକ୍ସ । ଆପଣ ବ୍ୟସ୍ତ ନହୋଇ ଯାହା ଜାଣିଛନ୍ତି, ସବୁ ସତ କଥା ମୋତେ କହି ଦିଅନ୍ତୁ । ନହେଲେ ଲେଖିକରି ଦିଅନ୍ତୁ । ତେବେ ଯାଇ ମୁଁ କେସ୍‌ଟାକୁ ହାତକୁ ନେଇ ପାରିବି ।'

ଡକ୍ଟର ମିଶ୍ର ଏଥର ପାଟି ଖୋଲିଲେ । 'ଦେଖନ୍ତୁ ମହାପାତ୍ର ବାବୁ । ଆପଣ ଆମ ସହରର ଜଣେ ନାମଜାଦା ଓକିଲ । ମୁଁ ଆପଣଙ୍କୁ ଆଉ ଅଧିକ କ'ଣ କହିବି । ଏଇ କେନ୍ଦୁଝରକୁ ମୁଁ ପାଞ୍ଚବର୍ଷ ତଳେ ଟ୍ରାନ୍‌ସଫର୍ ହୋଇ ରାଉରକେଲାରୁ ଆସିଥିଲି । ମୋ ବଡ଼ ଝିଅ ସେତେବେଳକୁ +3ରେ ଏଇଠି ଆସି ନାଁ' ଲେଖେଇଲା । ଯା' ଭିତରେ ସେ ପି.ଜି.ପାସ୍ କରିଲାଣି । ଭଲ ପଢ଼େ । ବେଶ୍ ସ୍ମାର୍ଟ । ଦେଖିବାକୁ ତା' ମାଆପରି ମାନେ ମିସେସ୍ ମିଶ୍ରଙ୍କ ପରି । ହଁ, ଏଇ ସାନଝିଅଟା ହେଉଛି, ତା'ର ଡୁପ୍ଲିକେଟ୍ । ରତ୍ନପ୍ରଭାକୁ ଯିଏ

ନ ଦେଖିଛି, ହିରଣ୍ୟପ୍ରଭାକୁ ସେ ଦେଖିଦେଲେ ଚଳିବ । ମୁଁ ତ କାହାରି କେବେ କିଛି କ୍ଷତି କରିନାହିଁ । ବରଂ ଡାକ୍ତର ହିସାବରେ ଯେତିକି ସେବା କରିବା କଥା, ତା'ଠାରୁ ଅଧିକ ସେବା କରି ଚାଲିଛି । ଆପଣ ଜାଣନ୍ତି, ମୁଁ ପ୍ରାଇଭେଟ୍ କ୍ଲିନିକ୍ ଆଟେଣ୍ଡ କରେନାହିଁ କି ରୋଗୀ ଅପରେସନ୍ ବେଳେ ଟଙ୍କାଟିଏ ବି ଦାବି କରେନାହିଁ ।

ମୁଁ ଭାବୁଥିଲି– ଆମେ ତ ଡାକ୍ତରଲୋକ । ଆମର କେହି ଶତ୍ରୁ ନଥିବେ । କିନ୍ତୁ ହଠାତ୍ ଏମିତି ଦୁର୍ଘଟଣାଟିଏ ଘଟିଗଲା କେମିତି ? ମୁଁ କିଛି ବୁଝି ପାରୁନାହିଁ । ମାଓବାଦୀମାନେ ବି ଆଜି ପର୍ଯ୍ୟନ୍ତ କିଛି ଅର୍ଥ ଦାବି କରି ନାହାନ୍ତି କି ଝିଅକୁ ଛାଡ଼ି ଦେବାପାଇଁ କୌଣସି ପ୍ରକାର ସର୍ତ୍ତ ରଖି ଫୋନ୍ ବି କରି ନାହାନ୍ତି । ଏବେ କ'ଣ କରିବି କୁହନ୍ତୁ ଆପଣ ।'

ଓକିଲବାବୁ କହିଲେ, 'ସାର୍ ! ମୁଁ ଗୋଟିଏ ପ୍ରଶ୍ନ ପଚାରିଥିଲି ଯେ, ରତ୍ନପ୍ରଭାର ଭଲ ପାଇବା ଓ ମାନସ ସହିତ ତା'ର କି ସଂପର୍କ ଥିଲା, ସେହିକଥା ମୋତେ ସ୍ପଷ୍ଟ ଭାବରେ କୁହନ୍ତୁ' ।

ଡକ୍ଟର ମିଶ୍ର ମୁଣ୍ଡ ତଳକୁ କରି କିଛି ସମୟ ନୀରବ ରହିଗଲେ । ମିସେସ୍ ମିଶ୍ର କହିଲେ, 'ଓକିଲ ବାବୁ ! ସେ ବିଷୟରେ ମିଶ୍ରବାବୁ କ'ଣ କହିବେ ? ମୁଁ କହି ଦେଉଛି ଶୁଣନ୍ତୁ । ଗୋଟାଏ ବାହାଘରର ପ୍ରସ୍ତାବ କଥା ଶୁଣି ରତ୍ନପ୍ରଭା ମୋତେ ଥରେ କହିଥିଲା, 'ମୋ ମନର ମଣିଷକୁ ମୁଁ ଠିକ୍ କରି ସାରିଛି । ମୋ ବାହାଘର ପାଇଁ କେହି କେବେ ବ୍ୟସ୍ତହେବା ଦରକାର ନାହିଁ । ସେ ପିଲାଟିର ନାଁ ହେଉଛି ମାନସ ପଣ୍ଡା । ଦେଖିବାକୁ ସୁନ୍ଦର । ଶିକ୍ଷିତ । ଭାରତୀୟ ସୈନ୍ୟ ବାହିନୀରେ ଜଣେ ଅଫିସର ଭାବରେ ଚାକିରି କରିବାପାଇଁ ସେ ସିଲେକ୍ଟ ହେଇଛି । ଚାକିରି ହେବାଟା ନିଶ୍ଚିତ । ତା'ର ଚାକିରି ହେଇଗଲେ ସେ ବାହା ହେବ ବୋଲି ପ୍ରତିଶ୍ରୁତି ଦେଇଛି' ।

ହଁ, ଆଉ ଗୋଟାଏ କଥା, ସେ ତା'ର ଠିକଣା ମୋତେ କେବେ କହିନାହିଁ । କିନ୍ତୁ ସେ ପିଲାଟିର ଫଟୋ ବି ମୋ ପାଖରେ ଅଛି, ହେଇ

ଦେଖନ୍ତୁ' । ଶ୍ରୀମତୀ ମିଶ୍ର ଫଟୋଟିକୁ ପର୍ସରୁ ବାହାର କରି ଓକିଲଙ୍କ ଆଡ଼କୁ ବଢ଼େଇ ଦେଲେ ।

ଫଟୋଟିକୁ ହାତରେ ଧରି ଓକିଲବାବୁ ଭଲକରି ଦେଖିଲେ । ଖୁବ୍ ଯତ୍ନର ସହିତ ସେ ଫଟୋଟିକୁ ଗୋଟିଏ ଲଫାପାରେ ଭର୍ତ୍ତିକରି ଫାଇଲ୍‌ରେ ରଖିଲେ । ସେ ଭାବୁଥିଲେ– ଘଟଣାଟା ଖୁବ୍ ତୀବ୍ରଗତିରେ ମୋଡ଼ ନେଉଛି । ଦେଖାଯାଉ, କିଛି ତ ଗୋଟାଏ ସୁରାକ୍ ମିଳିବ । ଏ' ଫଟୋଟା ଠିକ୍ ସମୟରେ କାମରେ ଲାଗିବ । ଏମାନେ ଯାଇ ସାରିଲେ, ଫଟୋ ପରୀକ୍ଷା ନିରୀକ୍ଷା ହେବ ।

ଡକ୍ଟର ମିଶ୍ର ଏବଂ ଶ୍ରୀମତୀ ମିଶ୍ରଙ୍କୁ ଆଶ୍ଚର୍ଯ୍ୟ କରିଦେଇ ଓକିଲବାବୁ ରତ୍ନପ୍ରଭାର ବିଭିନ୍ନ ପୋଜ୍‌ର ଫଟୋଗୁଡ଼ିକୁ ଗୋଟିଏ ପରେ ଗୋଟିଏ କାଢ଼ି ଦେଖାଇଲେ । ଡକ୍ଟର ମିଶ୍ର ଏବଂ ଶ୍ରୀମତୀ ମିଶ୍ର ଚମକି ପଡ଼ିଲେ । ଶ୍ରୀମତୀ ମିଶ୍ର କହି ପକାଇଲେ, 'ଏ' ଫଟୋ ସବୁ ଆପଣ କେମିତି କେଉଁଠୁ ପାଇଲେ ? ତେବେ ଆପଣ ମୋ ଝିଅ ବିଷୟରେ ବେଶ୍ କିଛି ଖବର ରଖିଛନ୍ତି' ?

ଓକିଲ ବାବୁ ଗମ୍ଭୀର ହୋଇ କହିଲେ, 'ହଁ ଶ୍ରୀମତୀ ମିଶ୍ର, ମୁଁ ଆପଣଙ୍କ ଝିଅ ସଂପର୍କରେ ଆହୁରି ବହୁତ କିଛି ତଥ୍ୟ ରଖିଛି' ।

କବାଟ ଖୋଲି ଓକିଲଙ୍କ କିରାଣୀ ବାବୁ ଚାମ୍ବର ଭିତରକୁ ପଶି ଆସିଲେ । ତାଙ୍କ ହାତରେ ଥିବା କାଗଜ ଖଣ୍ଡିକୁ ନେଇ ଓକିଲବାବୁ ପଢ଼ିଲେ । ସେଥିରେ ଲେଖାଥିଲା– 'ରତ୍ନପ୍ରଭା ମିଶ୍ର ଗତବର୍ଷ କଲେଜରୁ ବିଦାୟ ନେଇଛି । ମାନସ ପଣ୍ଡା ନାମକ ପିଲାଟି +2 ଓ +3ରେ ପଢ଼ିଲାବେଳେ ମାନସ ମୁଣ୍ଡା ଥିଲା । କେନ୍ଦୁଝର କୋର୍ଟରେ ଏଫିଡେଭିଟ୍ କରି ସେ ନିଜର ନାମକୁ ମାନସ ପଣ୍ଡା କରି ମାଷ୍ଟର ଡିଗ୍ରୀରେ ନାମ ଲେଖେଇଥିଲା । ଏହି ଦୁଇଜଣ ଆମ କଲେଜର ଅତ୍ୟନ୍ତ ମେଧାବୀ ଛାତ୍ର ଛାତ୍ରୀ ଥିଲେ । ବିଭିନ୍ନ କ୍ରୀଡ଼ା ପ୍ରତିଯୋଗିତା ତଥା ସଂଗୀତ ପ୍ରତିଯୋଗିତାରେ ଏ' ଦୁହେଁ ସବୁବେଳେ ପ୍ରଥମ ଦ୍ୱିତୀୟ ହେଉଥିଲେ । ଏହି ଦୁଇଜଣ ମିଶି ଯେଉଁ ବିଜ୍ଞାନ ପ୍ରୋଜେକ୍ଟ ତିଆରି କରିଥିଲେ, ତାହା ଜାତୀୟ ସ୍ତରରେ ପୁରସ୍କୃତ ହୋଇଥିଲା ।

ରତ୍ନପ୍ରଭା ଓ ମାନସକୁ ନେଇ ଅନେକ ଗୁଜବ ଶୁଣା ଯାଉଥିଲା ସତ, କିନ୍ତୁ ଏ' ଦୁହେଁ ଥିଲେ ଆମ କଲେଜର ଗର୍ବ ଓ ଗୌରବ' ।

ଡକ୍ଟର ମିଶ୍ର ଓ ଶ୍ରୀମତୀ ମିଶ୍ର କୌତୂହଳୀ ହେଇ ଓକିଲଙ୍କ ମୁହଁକୁ ଚାହିଁ ରହିଥିଲେ । ଓକିଲବାବୁ ଅଧ୍ୟକ୍ଷଙ୍କଠାରୁ ପାଇଥିବା ଚିଠି ଖଣ୍ଡିକୁ ଡକ୍ଟର ମିଶ୍ରଙ୍କ ହାତକୁ ବଢ଼େଇ ଦେଲେ । ଡକ୍ଟର ମିଶ୍ର ଚିଠି ଉପରେ ଆଖି ବୁଲେଇ ଆଣି ଶ୍ରୀମତୀଙ୍କ ହାତକୁ ବଢ଼େଇ ଦେଲେ । ଓକିଲବାବୁ ଦେଖିଲେ, ଚିଠି ପଢ଼ିସାରି ଡକ୍ଟର ମିଶ୍ର ଓ ଶ୍ରୀମତୀ ମିଶ୍ରଙ୍କ ମୁହଁ ଶୁଖି କଳା ପଡ଼ିଗଲାଣି । ତାଙ୍କ ପାଟିରୁ କଥା ବାହାରିଲା ନାହିଁ । ସେମାନଙ୍କର ନୀରବତା ଭଙ୍ଗକରି ଓକିଲବାବୁ କହିଲେ, 'ଡକ୍ଟର ମିଶ୍ର, ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁ ନାହିଁ । କିଛି ଗୋଟାଏ ସମାଧାନର ବାଟ ମିଳିଯିବ ବୋଲି ମୁଁ ଭାବୁଛି । ଆଜି ଆପଣମାନେ ଘରକୁ ଚାଲି ଯାଆନ୍ତୁ । ମୁଁ ଟିକେ ଏ' ବିଷୟରେ ଆଉ କିଛି ଅଧିକ ତଥ୍ୟ ସଂଗ୍ରହ କରେ, ତା'ପରେ ଆପଣଙ୍କୁ ଫୋନ୍ କରି ଡାକିବି । ଦେଖାଯାଉ, ମୁଁ ଆପଣଙ୍କ ପାଇଁ କ'ଣ କରି ପାରୁଛି ।'

ଡକ୍ଟର ମିଶ୍ର ବିକଳ ହେଇ କହିଲେ, 'ମହାପାତ୍ର ବାବୁ ! ଆପଣ ଆମର ରକ୍ଷକ, ଘନ ଅନ୍ଧକାର ଭିତରୁ ଜ୍ୟୋତି ଟିକିଏ ଦେଖେଇ ଦେଇଛନ୍ତି । ମୋ ଝିଅକୁ ମାଓବାଦୀ କବଳରୁ ଉଦ୍ଧାର କରି ଦିଅନ୍ତୁ । ମୁଁ ଆପଣଙ୍କୁ ଉପଯୁକ୍ତ ପାରିଶ୍ରମିକ ଦେଇଦେବି ।'

ଡକ୍ଟର ମିଶ୍ର ବିଦାୟ ନେବାପରେ ଓକିଲବାବୁ ସେ ଚିଠିଗୁଡ଼ିକୁ ଖୋଲି ଆଉ ଥରେ ପଢ଼ିନେଲେ । ଫଟୋଗୁଡ଼ିକୁ ମଧ୍ୟ ଆଉଥରେ ଦେଖିଲେ । ତା'ପରେ ସେଗୁଡ଼ିକୁ ଟେବୁଲ ଡ୍ରୟରରେ ରଖିଦେଇ ଗୁମ୍ ମାରି ବସିଲେ ।

ଚନ୍ଦୁ ଭିତରକୁ ପଶି ଆସୁଥିବାର ଦେଖି ଓକିଲବାବୁ କହିଲେ, 'ଆସ ଚନ୍ଦୁ । ଏ' ଝିଅଟି ହେଉଛି, କେନ୍ଦୁଝରର ବିଖ୍ୟାତ ଡାକ୍ତର ଚନ୍ଦ୍ରକାନ୍ତ ମିଶ୍ରଙ୍କ ଝିଅ । ମାନସର ପ୍ରେମିକା ରତ୍ନପ୍ରଭା ମିଶ୍ର । ତା' ବିଷୟରେ କଲେଜ ପ୍ରିନ୍ସପାଲ୍ ମୋତେ ସବୁକଥା ଜଣେଇଛନ୍ତି । ଏ'ସବୁ ଚିଠିରୁ ଜଣାପଡୁଛି, ସେ ଝିଅର

ଚିଠି ପାଇ ମାନସ ଏକ ପ୍ରକାର ପାଗଳ ହେଇଯାଇଛି । ଏମାନଙ୍କର ଗଭୀର ପ୍ରେମ ହିଁ ମାନସକୁ ମାଓବାଦୀ ହେବାକୁ ବାଧ କରିଛି । ମାଓବାଦୀଙ୍କ କବଳରୁ ସେ ଝିଅକୁ ଉଦ୍ଧାର କରିବାପାଇଁ ମାନସ ମାଓବାଦୀ ଦଳରେ ନିଜକୁ ସାମିଲ କରି ଜଙ୍ଗଲ ଭିତରକୁ ଚାଲିଯାଇଛି । ମୁଁ ଭାବୁଛି, 'ବୁଦ୍ଧିମାନ ପିଲା ମାନସ ଶୀଘ୍ର ନ ହେଲେ ବି କିଛିଦିନ ପରେ ଫେରି ଆସିବ ।'

ଦୂରରେ ଠିଆହେଇ ସନିଆଁ ସମସ୍ତଙ୍କର ସବୁକଥା ଶୁଣୁଥିଲା । ତା' ମନରେ ଥିବା ବିଭିନ୍ନ ସନ୍ଦେହ ଧୀରେ ଧୀରେ ଦୂର ହେବାକୁ ଲାଗିଲା । ସେ ମନେ ମନେ ଭାବୁଥାଏ, 'ମୋର ଆଉ ମୁଣ୍ଡାସାହିରେ କିଏ ଅଛି, କାହିଁକି ଆଉ ସେ ଗାଆଁରେ ରହିବି ? ମନୁଆଁକୁ ପାଇବା ପର୍ଯ୍ୟନ୍ତ ମୁଁ ବି ଯାଇ ଜଙ୍ଗଲରେ ତାକୁ ଖୋଜିବି । ଯେଉଁଦିନ ଯେଉଁଠି ମୋର ମୃତ୍ୟୁ ହେଲେ ହେବ, ଏ' ଜୀବନ ରଖି ଲାଭ କ'ଣ ?'

ଚନ୍ଦୁ ସାଙ୍ଗରେ ସେଦିନ ସନ୍ଧ୍ୟାରେ ସନିଆଁ ଗାଆଁକୁ ଫେରିଲା । ବାଟରେ ସେମାନେ ସବୁକଥା କୁହାକୁହି ହେଲେ । ସନିଆଁକୁ ତା' ଘରେ ଛାଡ଼ି ଦେଇ ନିଜ ଘରେ ଚନ୍ଦୁ ସିନା ଶୋଇ ପଡ଼ିଲା, କିନ୍ତୁ ସନିଆଁ ଆଖିକୁ ମୋଟେ ନିଦ ଆସିଲା ନାହିଁ । ସତରେ ରାତିଟା ତା' ପାଇଁ ଗୋଟାଏ ଭଲ ପରାମର୍ଶଦାତା ହେଇଗଲା । ସେ ମନେ ମନେ ସ୍ଥିର କଲା, କାଲି ସକାଳୁ କାହାରିକୁ କିଛି ନ କହି ଜଙ୍ଗଲ ଭିତରକୁ ଚାଲିଯିବ, ସେହି ମାଓବାଦୀ ଟୋକା ଦି'ଟାକୁ ଖୋଜି ବାହାର କରିବ । ମନୁଆଁକୁ ଉଦ୍ଧାର କରିବା ଲକ୍ଷ୍ୟନେଇ ସିଏ ବି ମାଓବାଦୀ ଦଳରେ ସାମିଲ ହେଇଯିବ ।



# ସାତ

ତା'ପରଦିନ ଚନ୍ଦୁ ବହୁତ ଡେରିରେ ଉଠିଲା । ମୁହଁଟା ଧୋଇବାକୁ ବି ସମୟ ପାଇଲା ନାହିଁ । ସିଧା ଚାଲିଲା– ସରପଞ୍ଚଙ୍କ ଘରକୁ । ଗତକାଲିର ସବୁ ଘଟଣା ଶୁଣିସାରି ସରପଞ୍ଚ ଗୋଟାଏ ଦୀର୍ଘଶ୍ୱାସ ପକେଇ କହିଲେ, 'ଭଗବାନ ବଡ଼ଲୋକ । ମଣିଷ ବଦନାମୀରୁ ବଞ୍ଚିଗଲା । ଚାଲ ଯିବା ବିଚରା ସନିଆଁ ଭାଇ କ'ଣ କରୁଛି ଦେଖି ଆସିବା । ଆମର ଭବିଷ୍ୟତ କାର୍ଯ୍ୟପନ୍ଥା କ'ଣ ହେବ, ସେ କଥା ବି ତା' ସହିତ ଆଲୋଚନା କରିବା ।'

ମୋଟର ସାଇକେଲରେ ବସି ଦି'ଜଣ ଯାଇ ଦେଖିଲେ, ସନିଆଁ ଦାଣ୍ଡ ଦୁଆରେ ତାଲା ପଡ଼ିଛି । ସାହି ପଡ଼ିଶାର ଲୋକେ ତା' ବିଷୟରେ କେହି କଛି କହି ପାରିଲେ ନାହିଁ । ସନିଆଁ ଉଭାନ ହୋଇଯିବା କଥା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହେଲେ ।

ଘଣ୍ଟାକ ଭିତରେ ନୂଆସାହି, ମୁଣ୍ଡାସାହି ସମେତ ଆଖପାଖ ଗାଆଁରେ ଚହଳ ପଡ଼ିଗଲା । ସନିଆଁ ବୁଢ଼ାକୁ କିଏ କୁଆଡ଼େ ନେଇ ଯାଇଛି । ଚାରିଆଡ଼େ ଆତଙ୍କ ଖେଳିଗଲା । ଏବେ ବୁଢ଼ାର ପୁଅଟାକୁ ତ ମାଓବାଦୀମାନେ ନେଇ ଯାଇଥିଲେ । ବୁଢ଼ୀଟା ମରିଗଲା । ଆଗରୁ ବଡ଼ ପୁଅଟା ମରି ଯାଇଥିଲା । ଏବେ ବୁଢ଼ା ନିଜେ କୁଆଡ଼େ ହଜିଗଲା । କେହି କିଛି କହି ପାରୁ ନାହାନ୍ତି ।

ସରପଞ୍ଚଙ୍କ ସହିତ ଚନ୍ଦୁ ମୋଟର ସାଇକେଲରେ ବସି ଅନେକଗୁଡ଼ିଏ ସମ୍ଭାବ୍ୟ ସ୍ଥଳକୁ ଯାଇ ହତାଶ ହେଇ ସେମାନେ ଫେରି ଆସିଲେଣି । ବାଟରେ ଚନ୍ଦୁ ଜଣେ ଲୋକଠାରୁ ଶୁଣିଲା, 'ଏଇବାଟ ଦେଇ ଗୋଟାଏ ବୁଢ଼ାଲୋକ ରେଳ ଲାଇନ୍ ଆଡ଼କୁ ଯାଉଥିଲା । ପାଗଳାଟାଏ ଭଳି ଦିଶୁଥିଲା । ଲାଗୁଥିଲା– ଲୋକଟା ଆତ୍ମହତ୍ୟା କରିବାକୁ ଯାଉଛି । ତେଣୁ ମୁଁ ତାକୁ ଅଟକେଇଲି, କିନ୍ତୁ ସେ ଅଟକିଲା ନାହିଁ । ବରଂ ଦୌଡ଼ି ପଳାଇଲା । ବାଟରେ କେଉଁଠି ରେଳ ଲାଇନ୍‌କୁ ଡେଇଁ ପଡ଼ିଥିବ ଆଉ..... ।'

ଲୋକଟାର କଥାକୁ ଚନ୍ଦୁ ସେତେ ଗୁରୁତ୍ୱ ଦେଇ ନଥିଲା । ଏଇମିତି ମନଗଢ଼ା କଥା କିଏ କେତେ କହି ପକାନ୍ତି । ଆଜିକାଲିର ଲୋକଗୁଡ଼ିକ ଯେମିତି ଜଟିଳ ହୋଇଗଲେଣି ନା'– କାହାରିକୁ ବିଶ୍ୱାସ କରି ହେବନାହିଁ । ଏଇଭଳି ଲୋକଙ୍କ ପାଇଁ ସତକଥା କହିବାକୁ ବି ଡର ମାଡ଼ିଲାଣି । ତଥାପି ବୁଡ଼ିଗଲାବେଳେ କୁଟାଖିଅକୁ ଭରସା କଲାପରି ଯିଏ ଯାହା କହିଲା, ତାକୁ ବ୍ୟାକୁଳିତ ମଣିଷର ମନ ମାନି ନେବାକୁ ବାଧ୍ୟ ହୁଏ ।

ସରପଞ୍ଚଙ୍କୁ ଚନ୍ଦୁ କହିଲା– 'ଶଙ୍କରଭାଇ ! ସେ ଲୋକଟାର କଥାକୁ ତ ଆମେ ଗୁରୁତ୍ୱ ଦେଲେନାହିଁ । ଲୋକଟା ଗାଲୁଆ କି ମିଛୁଆ ଭଳି ଲାଗୁଥିଲା । ତଥାପି ମୋ ମନ କହୁଛି, ଆମେ ଟିକେ ରେଳ ଲାଇନ୍ କଡ଼େ କଡ଼େ ବୁଲି ଆସିଲେ ଭଲ ହୁଅନ୍ତା । ମନ ଭିତରେ ଥିବା ସନ୍ଦେହଟା ବି ଦୂର ହେଇ ଯାଆନ୍ତା' ।

ମୁଣ୍ଡକୁ ନଖରେ କୁଣ୍ଡେଇ ହେଇ ସରପଞ୍ଚ କହିଲେ, 'ହଉ ଚାଲ । ତୋ' ମନଟା ବୁଝିଯାଉ । ସତରେ ଯଦି ସେମିତି କିଛି ହେଇଥାଏ । ଶେଷରେ ସବୁ ଆମରି ଦୋଷ ହେବ । ଭଲ ସରପଞ୍ଚ ହେଲି ଯେ, ମଣିଷ ନିଜଘର କଥା କେତେବେଳେ ଟିକେ ବୁଝି ପାରୁନାହିଁ ।'

ସୀତାବିଂଝି ରେଳଷ୍ଟେସନ୍ ପାଖରେ ସେମାନେ ମୋଟର ସାଇକେଲକୁ ରଖି ରେଳ ଲାଇନ ପାଖେ ପାଖେ ଗୁଡ଼ାଏ ବାଟ ଚାଲିଲେ । ଦୁଇଜଣଯାକ ଚାଲି ଚାଲି ଥକି ପଡ଼ିଲେ । ଫେରି ଯିବାକୁ ବାହାରିଛନ୍ତି, ଦି'ଜଣ ଲୋକ ସେପଟରୁ ଆସୁଥିବାର ଦେଖି ଟିକେ ସେମାନେ ଅଟକି ଗଲେ । ସେମାନଙ୍କୁ ପଚାରି ବୁଝିବାରୁ ଜଣା ପଡ଼ିଲା– ଗୋଟାଏ ଲୋକର ମୁଣ୍ଡ ନଥିବା ଶବ ପାହାଡ଼ ଉପରେ ଥିବା ଜଙ୍ଗଲରେ ପଡ଼ିଥିବାର ସେମାନେ ଦେଖି ଆସିଛନ୍ତି । ପୁଲିସରେ ଖବର ଦିଆ ଯାଇନାହିଁ ।

ସରପଞ୍ଚ କହିଲେ, 'ଚନ୍ଦୁ ! ଏତେବାଟ ତ ଆସି ସାରିଲେଣି, ଚାଲ ସେ ପାହାଡ଼ ପାଖକୁ ଯିବା । ମୁଣ୍ଡ ନଥିଲେ ବି ଆମେ କ'ଣ ଆମ ଭାଇଟାକୁ ଚିହ୍ନି ପାରିବା ନାହିଁ ।'

ତିନିଦିନ ହେଲା– ଚନ୍ଦୁର ଖାଇବା ପିଇବା ଠିକ୍ ନାହିଁ । ଏଣେ ଗୋଟାଏ ପରେ ଗୋଟାଏ ଝିନ୍‌ଝଟ । ଦେହ ମନ ତା'ର ପୂରା ଅବଶ ହୋଇ ଗଲାଣି । ପୁଣି ଏତେଗୁଡ଼ାଏ ବାଟ ଚାଲିକରି ଯାଇ ପାହାଡ଼ ଉପରକୁ ଚଢ଼ିବାକୁ ଆଉ ସାହସ ପାଉ ନଥାଏ । ସୀତାବିଂଝି ଷ୍ଟେସନ ପାଖରୁ ଦି' ପକେଟ ବିସ୍କୁଟ ଆଣିଥିଲା । ନ ହେଲେ ଭୋକରେ ମରିବାକୁ ପଡ଼ିଥା'ନ୍ତା । ତା'ର ଶାରୀରିକ ଓ ମାନସିକ ଅବସ୍ଥାକୁ ବୁଝିପାରି ସରପଞ୍ଚ କହିଲେ, 'ହଉ, ଏଇଠି ଟିକେ ବସିପଡ଼ । ଅଧଘଣ୍ଟା ପରେ ଟିକେ ଦମ୍‌ନେଇ ପାହାଡ଼ ଉପରକୁ ଯିବା । କାଳେ କିଛି ଅଘଟଣ ଘଟିଥିବ ।'

ଚନ୍ଦୁ ବସୁ ବସୁ ତଳେ ସିଧା ହେଇ ଗଡ଼ି ପଡ଼ିଲା । ଖୋଲା ଆକାଶର ସୁଲୁସୁଲିଆ ପବନରେ ସଙ୍ଗେସଙ୍ଗେ ତାକୁ ନିଦ ଆସିଗଲା । ସରପଞ୍ଚ ତା' ପାଖରେ ବସି ଏଣିକି ତେଣିକି ଚାହୁଁଥା'ନ୍ତି । କଣ୍ଟାର ଜଙ୍ଗଲ ଭିତରୁ ଆଉ କିଏ ଦୁଇଜଣ ତାଙ୍କ ଆଡ଼କୁ ଆସୁଥିବାର ଦେଖାଗଲା । ସେ ନିରୀକ୍ଷଣ କରି ଦେଖିଲେ, ସେମାନେ କାନ୍ଧରେ ବଂଧୁକ ଝୁଲେଇଛନ୍ତି । ତାଙ୍କ ପୋଷାକ ପତ୍ରରୁ ଜଣାପଡୁଥିଲା– ଏ' ଦୁଇଜଣ ହେଉଛନ୍ତି ମାଓବାଦୀ । ଅଳ୍ପ ସମୟ ଭିତରେ ସେ ଦୁଇଜଣ ଆସି ତାଙ୍କ ପାଖରେ ପହଞ୍ଚିଗଲେ । ତାଙ୍କ ଭିତରେ ଥିବା ଡେଙ୍ଗା ମାଓବାଦୀ ଜଣକ ସରପଞ୍ଚଙ୍କୁ ପରିଚୟ ମାଗିଲା । କେଉଁ ଉଦ୍ଦେଶ୍ୟ ନେଇ ଏ' ଜଙ୍ଗଲ ଭିତରେ ପଶୁଛ ବୋଲି ପଚାରିଲା ।

ସରପଞ୍ଚ ଶଙ୍କର ମୁଣ୍ଡା ସବୁ ସତ କଥା ନିର୍ଭୟରେ କହିଦେଲା । ଯେଉଁ ମଣିଷଟା ପାହାଡ଼ ଉପରେ ମରି ପଡ଼ିଛି, ତାକୁ ଚିହ୍ନିବାକୁ ଯାଉଛନ୍ତି ବୋଲି କହିଲେ । ମାଓବାଦୀ ଜଣକ କହିଦେଲେ, 'ସେ ଲୋକଟା ଗୋଟାଏ ଇନ୍‌ଫର୍ମର ଥିଲା । ସର୍ଦ୍ଦାରଙ୍କ ନିର୍ଦ୍ଦେଶରେ ଆମେ ତାକୁ ଧରିଆଣି ହତ୍ୟା କରିଛୁ । ତମେ ଯାହାକୁ ଖୋଜୁଛ, ସେ ଏ' ଜଙ୍ଗଲ ଭିତରକୁ ଯାଇନାହିଁ । ଘରକୁ ଫେରିଯାଅ । ତମେ ଦୁଇଜଣ ଚାଲି ଚାଲି ଥକି ପଡ଼ିଛ । ଭୋକ ବି ଲାଗୁଥିବ । ଆମ ପାଖରେ କିଛି ରୋଟି ଆଉ ଭଜା ଅଛି । ନିଅ, ଖାଇଦେଇ ଯେଉଁ ବାଟେ ବାଟେ ଆସିଥିଲ, ସେଇବାଟେ ଚାଲିଯାଅ ।'

ବୋକାଙ୍କ ଭଳି ମାଓବାଦୀଙ୍କ ମୁହଁକୁ ଚାହିଁ ରୋଟି ଆଉ ଭଜା ତାଙ୍କ ହାତରୁ ନେଇ ସରପଞ୍ଚ ଚନ୍ଦୁକୁ ଉଠେଇଲେ । ମାଓବାଦୀ ତାଙ୍କ ବାଟରେ ଚାଲିଗଲେ । ଚନ୍ଦୁ ଓ ସରପଞ୍ଚ ହତାଶ ମନରେ ଷ୍ଟେସନକୁ ଫେରିଲେ ।

ବାଟରେ ଚନ୍ଦୁ ମାଓବାଦୀଙ୍କ ବିଷୟରେ ଅଧିକ ଜାଣିବା ପାଇଁ ସରପଞ୍ଚଙ୍କୁ ପଚାରିଲା- 'ଏମାନେ ଜଙ୍ଗଲ ଭିତରେ ରହି ବଡ଼ କଷ୍ଟରେ ଚଳୁଥିବେ । କେତେବେଳେ କ'ଣ ଖାଉଥିବେ, ଖୋଲା ଆକାଶ ତଳେ ଖରାବର୍ଷା ସହି କ'ଣ ଲାଭ ପାଉଛନ୍ତି ? ଏମାନଙ୍କର କାମ କ'ଣ କେବଳ ମଣିଷ ମାରିବା ଆଉ ସରକାରୀ ସଂପତ୍ତିକୁ ନଷ୍ଟ କରିବା ! ଏମାନେ କି' ପ୍ରକାର ମଣିଷ ଯେ, ସମାଜରେ ରହିବାକୁ ପସନ୍ଦ କରୁ ନାହାନ୍ତି, କାହିଁକି ?'

ଏତେଗୁଡ଼ାଏ ପ୍ରଶ୍ନର ସରଳ ଉତ୍ତର ଦେଇ ସରପଞ୍ଚ କହିଲେ,- 'ଶୁଣ ଚନ୍ଦୁ ! ଏମାନେ ଆମରିମାନଙ୍କ ଭିତରୁ ଜଣେ ଜଣେ ମଣିଷ । ଏମାନଙ୍କର ସର୍ଦ୍ଦାର ବା ନେତାମାନଙ୍କର ଗୋଟାଏ ନିଜସ୍ୱ ଆଦର୍ଶ ରହିଛି । ସେମାନେ ପ୍ରଚଳିତ ସରକାରଙ୍କ ନୀତି ଓ ଆଦର୍ଶକୁ ସହଜରେ ଗ୍ରହଣ କରି ପାରୁ ନାହାନ୍ତି । ସେମାନେ କହନ୍ତି, ବର୍ତ୍ତମାନ କିଛିଲୋକ ଅନ୍ୟାୟ ଉପାୟରେ ଅଧିକ ଧନୀ ହେଇ ଚାଲିଛନ୍ତି, ଆଉ ଆମଭଳି ଗରିବ ଆଦିବାସୀମାନେ ଯେଉଁ ଅନ୍ଧାରକୁ ସେଇ ଅନ୍ଧାରରେ ରହି ଯାଉଛୁ । ବଣ ଜଙ୍ଗଲରେ ଆମେ ଜନ୍ମ ନେଇଛୁ । ଜଙ୍ଗଲ ଉପରେ ଆମର ଅଧିକାର ରହିଛି । ସରଳ ଆଦିବାସୀମାନଙ୍କୁ କେତେ ଜଣ ଧୂର୍ତ୍ତଲୋକ ବିଭିନ୍ନ କୌଶଳରେ ଶୋଷଣ କରୁଛନ୍ତି । ତାଙ୍କପାଇଁ ସରକାର ଯେଉଁ ଯୋଜନା କରୁଛନ୍ତି, ସେ ସବୁର ଲାଭ ସେମାନଙ୍କ ପାଖରେ ପହଞ୍ଚି ପାରୁନାହିଁ । କାହା ପାଖରେ ଆବେଦନ ନିବେଦନ କଲେ, ଉଚିତ୍ ବିଚାର ମିଳି ପାରୁନାହିଁ । ତେଣୁ ସେମାନେ ବନ୍ଧୁକ ମୁନରେ ଅନ୍ୟାୟ ଉପାୟରେ ଅର୍ଥ ଉପାର୍ଜନ କରୁଥିବା ଧୂର୍ତ୍ତ ମଣିଷ ଆଉ ତାଙ୍କ ଉପରେ ଅତ୍ୟାଚାର କରୁଥିବା ବଦ୍‌ମାସମାନଙ୍କୁ ଉପଯୁକ୍ତ ଦଣ୍ଡ ଦେବାପାଇଁ ଗୋଟାଏ ଦଳ ଗଢ଼ିଛନ୍ତି । ବିଭିନ୍ନ ଗାଆଁକୁ ଯାଇ ନିଜର ଆଦର୍ଶକୁ ପ୍ରଚାର କରି କିଛି ଲୋକଙ୍କୁ ନିଜ ଦଳରେ

ମିଶାଇ ଚାଲିଛନ୍ତି । ଆଉ କିଛି ଲୋକଙ୍କୁ ସେମାନେ ଅସୁବିଧାରେ ପକେଇ ବା ଅପହରଣ କରି ନେଇ ନିଜ ଅକ୍ତିଆରରେ ରଖି ଦେଉଛନ୍ତି । ଥରେ ଯିଏ ଏହି ଦଳରେ ମିଶିଗଲା, ତାକୁ ସେମାନେ ବଂଧୁକ ଚଳେଇବା ତାଲିମ ଦେଉଛନ୍ତି, ଜଙ୍ଗଲ ଭିତରେ ମାଓବାଦୀ ଆଡ୍ଡାରେ ରହିବା, ଖାଇବା ଓ ଚଳପ୍ରଚଳ ହେବାର ଅଭ୍ୟାସ କରାନ୍ତି । ତାଲିମପ୍ରାପ୍ତ ନୂଆ ମାଓବାଦୀମାନଙ୍କୁ ତାଙ୍କର ଦକ୍ଷତା ଓ ଚତୁର ପଣିଆକୁ ଦେଖି ବିଭିନ୍ନ କାର୍ଯ୍ୟରେ ନିୟୋଜିତ କରାନ୍ତି । କିଏ ତାଲିମ ଶିବିରରେ ରହି ନୂଆ ସଭ୍ୟମାନଙ୍କୁ ବଂଧୁକ ଚାଳନା ଶିଖାଏ ତ କିଏ ପୁଣି ବୋମା ବିସ୍ଫୋରଣ କାର୍ଯ୍ୟ କରେ । କିଏ ଅର୍ଥ ଯୋଗାଡ଼ କାମରେ ଲାଗେ ତ ପୁଣି କିଏ ଗୁପ୍ତବାର୍ତ୍ତା ସଂଗ୍ରହ କରେ । ଆଉ କେତେଜଣ ନୂତନ ସଭ୍ୟ ସଂଗ୍ରହ କାର୍ଯ୍ୟରେ ଲାଗି ଥାଆନ୍ତି । ସବୁ ଜାଗାରେ ଜଣେ ଜଣେ ସର୍ଦ୍ଦାର ଥାଆନ୍ତି । ତାଙ୍କରି ନିର୍ଦ୍ଦେଶ ମାନି ଅନ୍ୟମାନେ ସୈନିକ ଭଳି କାମ କରନ୍ତି । ସେମାନଙ୍କର ଖାଇବା ଓ ସେବାଯତ୍ନ କାମରେ ଅନେକ ସଭ୍ୟ ନିୟୋଜିତ ହେଇଥା'ନ୍ତି । ତାଙ୍କ ଭିତରେ ମହିଳାମାନେ ବି ଅଛନ୍ତି । ସେମାନଙ୍କୁ ବିଭିନ୍ନ ପ୍ରକାର କାର୍ଯ୍ୟରେ ଲଗାଯାଏ । ମଝିରେ ମଝିରେ ମାଓବାଦୀମାନେ ଏକତ୍ରିତ ହୋଇ ବ୍ୟାଙ୍କ୍ ଲୁଟ୍ କରନ୍ତି । ସରକାରୀ ପୁଲିସ ଥାନାକୁ ଆକ୍ରମଣ କରି ଅସ୍ତ୍ରଶସ୍ତ୍ର ଛଡ଼େଇ ନିଅନ୍ତି । ଧନୀଲୋକ ଆଉ କଣ୍ଟ୍ରାକ୍ଟରମାନଙ୍କୁ ଭୟ ଦେଖେଇ ଚାନ୍ଦା ହିସାବରେ ଟଙ୍କା ଆଦାୟ କରନ୍ତି ।'

ସରପଞ୍ଚଙ୍କ କଥା ସବୁ ଶୁଣିସାରି ଚନ୍ଦୁ କହିଲା, 'ତୁ ଏତେକଥା କେମିତି ଜାଣିଲୁ ?'

'କାହିଁକି, ଯେଉଁ ଦି'ଜଣ ମାଓବାଦୀ ଆମ ଗାଁ' ଭିତରକୁ ଆସନ୍ତି, ସେମାନେ ତ ଏଇକଥା ସବୁ କହନ୍ତି । ଖବର କାଗଜରେ ମାଓବାଦୀଙ୍କ କଥା ବି ପ୍ରକାଶ ପାଏ । ତୁ କ'ଣ ଜାଣିନାହୁଁ । ସେମାନେ କେମିତି ଆମକୁ ଭୟ ଦେଖେଇ କାମ ଆଦାୟ କରି ନିଅନ୍ତି । ଜୀବନକୁ କାହାର ଭୟ ନାହିଁ । ସେଇଥିପାଇଁ ତ ମୁଁ ସବୁକଥା ଜାଣି ବି ସେମାନଙ୍କୁ କିଛି କହେନାହିଁ, କି ତାଙ୍କ

କଥା ଅନ୍ୟ କୌଣସି ଜାଗାରେ ପ୍ରକାଶ କରେନାହିଁ । ପୁଲିସ ଆସିଲେ, ସେମାନେ ଲୁଚି ଯାଆନ୍ତି । ଆଜିକାଲି ପୁଲିସମାନେ ବି ତାଙ୍କୁ ଭୟ କରି ଆଉ ଥାନାକୁ ଆସୁ ନାହାନ୍ତି । ତେଣୁ ସେମାନେ ତାଙ୍କ କାମକୁ ବେଶ୍ ଆରାମରେ କରି ନେଇ ଯାଉଛନ୍ତି । ଆମଭଳି ସାଧାରଣ ଗରିବ ଲୋକ କ'ଣ କରି ପାରିବୁ ? ସରକାର ଯାହା କରିବାର କରିବେ' । ସରପଞ୍ଚ କହିଲେ ।

ଏହା ମଧ୍ୟରେ କେତେବେଳେ ରାସ୍ତା ଶେଷ ହୋଇ ଯାଇଥିଲା– ଜଣା ପଡ଼ିଲା ନାହିଁ । ମୋଟର ସାଇକେଲରେ ବସି ସେମାନେ ସିଧା ଘରକୁ ଚାଲିଲେ ।



# ଆଠ

ସେଦିନ ଜୀବନକୁ ବାଜି ଲଗେଇ ସନିଆଁ ଏକାମୁହାଁ ହେଇ ଜଙ୍ଗଲ ଭିତରେ ପଶିଲା । ତା' ମନରେ ଅମାପ ଶକ୍ତି ଓ ଅଦମ୍ୟ ସାହସ । କାହାରିକୁ ଭୟ ନାହିଁ । ଯେ କୌଣସି ପ୍ରତିକୂଳ ପରିସ୍ଥିତିକୁ ସେ ସମ୍ମୁଖୀନ ହେବାକୁ ମନେ ମନେ ସ୍ଥିର କରିଥାଏ । ଭୟଙ୍କର ଜଙ୍ଗଲ । ରାସ୍ତାରେ କେହି ଗୋଟାଏ ମଣିଷ ଯିବା ଆସିବା କରୁଥିବା ତା' ଦୃଷ୍ଟିକୁ ଆସିଲା ନାହିଁ । କେବେ କେଉଁଠି ଗୋଟାଏ ବଣଜନ୍ତୁ ତା' ଆଗଦେଇ ଚାଲି ଯାଉଥିଲେ, ତା'ର କୌଣସି ପ୍ରଭାବ ସନିଆଁ ଉପରେ ପଡୁ ନ ଥାଏ । କେଉଁଦିଗରୁ କେଉଁ ବାଟ ଦେଇ କେତେ ବାଟ ସେ ଜଙ୍ଗଲ ଭିତରେ ପଶି ଗଲାଣି, ସେ କଥା ତାକୁ ଜଣା ପଡୁ ନ ଥାଏ । ତା' ପାଇଁ ସେ ସବୁର ହିସାବ କିଛି ଦରକାର ନ ଥିଲା । ସେ ନିଜ ଦେହ ଆଉ ମନକୁ ଏକ ପ୍ରକାର ଜାରି ଦେଇଥିଲା । ତେଣୁ କୌଣସି ପ୍ରକାର ପଥକ୍ଲାନ୍ତ ସେ ଅନୁଭବ କରିପାରୁ ନ ଥିଲା । ଲକ୍ଷ୍ୟ ଏକ – ମନୁଆଁକୁ ସେ କଳେବଳେ କୌଶଳେ ମାଓବାଦୀଙ୍କ କବଳରୁ ଉଦ୍ଧାର କରିବ । ଏଥିପାଇଁ ସେ ଯେକୌଣସି ପରିସ୍ଥିତି ପାଇଁ ପ୍ରସ୍ତୁତ ହେଇ ରହିଛି । ଗତକାଲିଠାରୁ ତା' ଦେହ ଭିତରକୁ ଅନ୍ନଜଳ ଯାଇ ନାହିଁ । ତଥାପି ତାକୁ ଭୋକ ଲାଗୁନାହିଁ । ସେ ନିଜକୁ ଏହାର କାରଣ ପଚାରି ମଧ୍ୟ ଉତ୍ତର ପାଇ ପାରୁନାହିଁ । ସୂର୍ଯ୍ୟ ଉଦୟ ପୂର୍ବରୁ ସେ ଚାଲିଛି, ପୁଣି ଅସ୍ତ ହେବାକୁ ଗଲାଣି । ଘଞ୍ଚ ଜଙ୍ଗଲ ଭିତରକୁ ଧୀରେ ଧୀରେ ଘନ ଅନ୍ଧକାର ମାଡ଼ି ଆସୁଛି । ଗଛଗୁଡ଼ାକ ତାକୁ ଗୋଟାଏ ଗୋଟାଏ ରାକ୍ଷସ ଭଳି ଦେଖା ଯାଉଛି । ବୁଦାଗୁଡ଼ାକ ଅନ୍ଧକାର ଗୁହା ଭଳି ଦେଖା ଯାଉଛନ୍ତି । ତଥାପି ସନିଆଁର ପାଦ ବନ୍ଦ ହେଉନାହିଁ । କଣ୍ଟାବୁଦାକୁ ହାତରେ ଆଡ଼େଇ ଆଗେଇ ଚାଲିଛି । ହଠାତ୍ ସେ ନିଜ କାନ୍ଧରେ କାହାର ଶକ୍ତ ହାତର ସ୍ପର୍ଶ ଅନୁଭବ କଲା । ଠିଆ ହେଇ ପଡ଼ି ପଛକୁ ଚାହିଁଲା । ଜଣେ ବଂଧୁକଧାରୀ ମାଓବାଦୀ ଯୁବକ ତାକୁ ପଞ୍ଜାରେ ଅଟକେଇ ଧରିଛି । ସେ ଯୁବକଟି କୃତ୍ରିମ

କଣ୍ଠରେ ପଚାରିଲା, 'ତୁ କିଏ ? କୁଆଡ଼େ ଯାଉଛୁ । ଆଗରେ ବିପଦ । ସାବଧାନ ହେଇ ଏଇଠି ଠିଆ ହେଇଯା' । ନଚେତ୍ ଆଗକୁ ଯିବାକୁ ଚେଷ୍ଟାକଲେ, ବଂଧୁକ ମୁନରେ ତୋ'ର ମୁଣ୍ଡଟାକୁ ମୁଁ ଉଡ଼େଇଦେବି ।'

ସନିଆଁ ନିର୍ଭୟରେ କହିଲା- 'ମୋ ନାଆଁ ସନିଆଁ । ମୁଣ୍ଡାସାହିରେ ମୋର ଘର । ଜୀବନକୁ ବାଜି ଲଗେଇ ଘର ଛାଡ଼ି ଚାଲି ଆସିଛି- ତମରି ପାଖକୁ । ଆଜିଠାରୁ ମୁଁ ଏଇଠି ରହିବି । ତମରି ଭଳି ଜୀବନ ବିତେଇବି । ବଂଧୁକ ଚଳା ଶିଖିବି । ମାଓବାଦୀ ହେବି ।'

–ଠିକ୍ ଅଛି । ତୋତେ ଆଗ ସର୍ଦ୍ଦାର ପାଖକୁ ଯିବାକୁ ପଡ଼ିବ । ତୋ'ର ଅସଲ ଉଦ୍ଦେଶ୍ୟ କ'ଣ ଜାଣି ସାରିଲେ, ତା'ପରେ ଯାଇ ତୁ ଆମର ମେମ୍ବର ହୋଇ ପାରିବୁ । ଚାଲ ମୋ ସାଙ୍ଗରେ । ଯୁବକ ଜଣକ ଏତିକି କହି ଆଗେ ଆଗେ ଚାଲିଲା । ହାତରେ ତା'ର ଥାଏ ଏକ ଶକ୍ତିଶାଳୀ ଟର୍ଚ୍ଚ । ସେହି ଆଲୁଅରେ ଦୁହେଁ ଚାଲିଲେ ଛୋଟ ସର୍ଦ୍ଦାର କେର୍କେଟା ପାଖକୁ ।

ଘନ ଜଙ୍ଗଲ ମଝିରେ ଗୋଟିଏ ବିରାଟ ଶିବିର । ତାଳପତ୍ରରେ ତିଆରି ଗୁଡ଼ିଏ ଛୋଟ ବଡ଼ କୁଡ଼ିଆ । ଶେଷ ଆଡ଼କୁ ଦେଖା ଯାଉଥାଏ–ଗୋଟାଏ ତମ୍ବୁ । ତମ୍ବୁ ଚାରିପଟେ କେତେଜଣ ବନ୍ଧୁକଧାରୀ ମାଓବାଦୀ ଜାଗ୍ରତ ହୋଇ କେବଳ ସର୍ଦ୍ଦାରଙ୍କ ଆଦେଶ ଅପେକ୍ଷାରେ ଠିଆ ହେଇଥା'ନ୍ତି । ତମ୍ବୁ ଭିତରଟା ବେଶ୍ ଆଲୋକିତ ହୋଇଥାଏ । ପାଖାପାଖି ବିଭିନ୍ନ କୁଡ଼ିଆ ଭିତରେ ମହମବତୀ ଆଉ ଲଣ୍ଠନ ଜଳୁଥାଏ । ସେଥିରେ ଆହୁରି କେତେକ ମାଓବାଦୀ ବିଶ୍ରାମ ନେଉଥା'ନ୍ତି । ସେହିବାଟ ଦେଇ ସନିଆଁ ଚାଲିଛି- ଯୁବକ ମାଓବାଦୀର ନିର୍ଦ୍ଦେଶରେ । ତା'ପରେ କିଛି ଦୂରରେ ଦେଖାଗଲା- ଗୋଟାଏ ଭୟଙ୍କର ଗୁମ୍ଫା । ତାକୁ ଦେଖିଲେ ଲାଗିବ- ଗୁମ୍ଫାଟାକୁ ସତେ ଯେମିତି ମଣିଷ ତିଆରି କରିଛି । ଗୁମ୍ଫା ଭିତର ଦେଇ ସେମାନେ ପହଞ୍ଚିଲେ – ଗୋଟିଏ ସୁନ୍ଦର ବିଳାସପୂର୍ଣ୍ଣ ଅଟ୍ଟାଳିକାରେ । ସକଳ ପ୍ରକାର ସୁବିଧା ସୁଯୋଗ ସେ ଘରେ ଖଞ୍ଜା ଯାଇଛି । ଖାଇବା ପିଇବା, ନାଚଗୀତର ଆସର ଚାଲେ ସେହିଘରେ । ବିଭିନ୍ନ ପ୍ରକାର

ମାରଣାସ୍ତ୍ରରେ ସଜ୍ଜିତ ମାଓବାଦୀ ସୈନିକମାନେ ସେ ଘରର ଚତୁର୍ଦ୍ଦିଗରେ ଘେରି ରହିଥା'ନ୍ତି । ତା' ଭିତରକୁ ଯିବାପାଇଁ ବିଭିନ୍ନ ଜାଗାରେ ବହୁବାର ସେମାନଙ୍କୁ ଅଟକି ଅନୁମତି ନେବାକୁ ପଡୁଛି । ଅନୁମତି ପାଇ ଛୋଟ ସର୍ଦ୍ଦାରଙ୍କ ପାଖରେ ପହଞ୍ଚିଗଲା ସନିଆଁ ।

ସନିଆଁ ବୁଢ଼ାହେଲେ କ'ଣ ହେବ, ତା' ବପୁରେ ଏବେ ବି ଯଥେଷ୍ଟ ଶକ୍ତିଅଛି । ତା' ପାଖରେ ଅଛି ବୟସର ଦୀର୍ଘ ଅଭିଜ୍ଞତା । ସବୁଠାରୁ ବଡ଼ କଥା ହେଲା– ମନୋବଳ । ସନିଆଁ ପାଖରେ ଏହାର ପ୍ରାଚୁର୍ଯ୍ୟ ଦେଖି ଛୋଟ ସର୍ଦ୍ଦାର କହିଲେ– 'ଏ ଲୋକଟାକୁ ୧୫ ଦିନ କଡ଼ା ନଜରରେ ରଖ । କିଛି ସନ୍ଦେହ ହେଲେ, ମୋ ପାଖକୁ ନେଇ ଆସିବ । ମୁଁ ତା'ର ମୁଣ୍ଡକାଟ ଆଦେଶ ଦେବି ।'

ସନିଆଁ ପ୍ରଥମ ସାକ୍ଷାତକାରରେ ପାସ୍ କରିଗଲା । କାରଣ ସିଏ ତ ଗୋଇନ୍ଦାଗିରି କରିବାକୁ ଆସିନାହିଁ କି କାହାରିକୁ ଧୋକା ଦେବାକୁ ସେ ମାଓବାଦୀରେ ସାମିଲ ହୋଇନାହିଁ । ମୁଣ୍ଡକାଟ ଭଳି ଦଣ୍ଡ ପାଇବା ଧମକକୁ ସେ ବା କାହିଁକି ଡରିବ ?

ଯୁବକର ଇସାରାରେ ସନିଆଁ ତାକୁ ଅନୁସରଣ କରି ଚାଲିଲା ଆଉ ଏକ ଅଜଣା ସ୍ଥାନକୁ । ବଣ ଭିତରକୁ ଗୋଟିଏ ଲମ୍ବା ସରୁ ରାସ୍ତାଦେଇ କିଛି ବାଟ ଗଲାପରେ ଘଞ୍ଚ ଜଙ୍ଗଲ ଭିତରେ ପଡ଼ିଲା– ପ୍ରଶିକ୍ଷଣ ଶିବିର । ତାକୁ ଦେଖି ସନିଆଁର ଆଖି ଖୋସି ହେଇଗଲା । ଶହ ଶହ ବନ୍ଧୁକ କୁଢ଼କୁଢ଼ ଗୁଳିଗୋଳା, ବସ୍ତା ବସ୍ତା ବୋମା । ବିଭିନ୍ନ ପ୍ରକାର ଗାଡ଼ି । ଖାଇବା ପିଇବା ପାଇଁ ରୋଷେଇଶାଳ । ଦୂରରୁ ମାଉଁସ କଷା ଯାଉଥିବାର ବାସ୍ନା ଭାସି ଆସୁଥାଏ । ଦଳଦଳ ହେଇ ପୋଷାକ ପିନ୍ଧା ଯୁବକ–ଯୁବତୀମାନେ ବେଶ୍ ମଉଜ ମଜଲିସ୍‌ରେ ମାତିଛନ୍ତି । ବୋଧହୁଏ ତାଙ୍କର ତାଲିମ ଶେଷରେ ସେମାନେ ଖାଇବା ପିଇବାକୁ ଅପେକ୍ଷା କରିଛନ୍ତି ।



ଶିବିର ଭିତରକୁ ପଶିଲା ସନିଆଁ । ଶିବିରର ମୁଖ୍ୟଙ୍କ ସହିତ ସେ ଯୁବକଟି କଥା ହେଇସାରି ସନିଆଁକୁ କହିଲା– 'ଏଇଠି ତମେ ରୁହ । ଶିବିର ସର୍ଦ୍ଦାରଙ୍କ ପରାମର୍ଶ ନେଇ କାମ କରିବ । ଛୋଟ ସର୍ଦ୍ଦାରଙ୍କ କଥାକୁ ମନେ ରଖିଥିବ, ନଚେତ୍....... ।'

ଯୁବକଟି ଚାଲିଗଲା । ସନିଆଁ ତା' ଯିବା ବାଟକୁ ଚାହିଁ ରହିଥାଏ ।

ଶିବିର ସର୍ଦ୍ଦାର କହିଲେ, 'ତୋ' ନାଆଁ କଣ ? ତୋ' ପରିଚୟ ଦେ । କି କି କାମ କରି ପାରିବୁ କହ । ଏଠିକାର ନୀତି ନିୟମ ଜାଣିବାକୁ ସମୟ ଲାଗିବ । କିନ୍ତୁ ମନେ ରଖି ଥା'– କେବେ ଏଠୁ ଖସି ଯିବାକୁ ଚେଷ୍ଟା କରିବୁ ନାହିଁ ।'

ସନିଆଁ ନିର୍ଭୟରେ ନିଜର ପରିଚୟ ଦେଇ ତାଙ୍କ ନିର୍ଦ୍ଦେଶକୁ ମଥାପାତି ମାନିନେବ ବୋଲି ପ୍ରତିଶ୍ରୁତି ଦେଲା । କିଛି ସମୟ ଭିତରେ ତାଲିମ ନେଉଥିବା ମାଓବାଦୀ ଯୁବକ ଯୁବତୀମାନେ ମାଂସ ରୋଟି ଖାଇଲେ । ସନିଆଁକୁ ବି ଖାଇବାକୁ ଦେଲେ । କେବେଠୁ ତ ସେ ଖାଇ ନଥିଲା । ପେଟଭରି ମାଂସ ରୋଟି ଖାଇ ବିକଳ ଆତ୍ମାକୁ ତୃପ୍ତ କରି ଶିବିର ଭିତରେ ଯାଇ ଅବଶ ଶରୀରକୁ ଲୋଟେଇ ଦେଲା ।

୦

# ନଅ

ସକାଳୁ ସକାଳୁ ସନିଆଁର ନିଦ ଭାଙ୍ଗିଗଲା । ସେ ଆଖି ମଳିମଳି ଚାରିଆଡ଼କୁ ଚାହିଁଲା । ସୂର୍ଯ୍ୟଙ୍କର ତେରଛା କିରଣ ଜଙ୍ଗଲ ଭିତରେ ତୀର ମାରିଲା ଭଳି ପଶି ଆସୁଥାଏ । ଆଜିର ସକାଳଟା ତା' ପାଇଁ ସଂପୂର୍ଣ୍ଣ ନୂଆ । ଭିନ୍ନ ଏକ ଗ୍ରହରେ ସେ ଯେମିତି ପହଞ୍ଚି ଯାଇଛି । ଏଠି ତ ନିଜର ବୋଲି କେହି ନାହାନ୍ତି । ବରଂ ସମସ୍ତେ ତାକୁ ସନ୍ଦେହ ଦୃଷ୍ଟିରେ ଦେଖୁଛନ୍ତି । ସନ୍ଦେହଟା ଘନୀଭୂତ ହେଲେ, କିମ୍ବା କୌଣସି ପ୍ରକାର ଦୋଷ ତା'ର ପ୍ରମାଣିତ ହେଇଗଲେ– ମୁଣ୍ଡକାଟ ନିଶ୍ଚିତ । ଛୋଟ ସର୍ଦ୍ଦାର ଚେହେରା ଆଉ କଣ୍ଠରୁ ଜଣା ପଡୁଛି– ସେ ଗୋଟାଏ ସାଧାରଣ ମଣିଷ ନୁହେଁ, ସାକ୍ଷାତ ଯମ ।

ଏକଥା ଭାବୁ ଭାବୁ ସନିଆଁ ମନକୁ ମନ କହିଲା– 'ମୋର ତ ବିଶ୍ୱାସ ଘାତକତା କରିବାର ନାହିଁ କି କାହାରି ଅନିଷ୍ଟ କରିବାର ନାହିଁ । ମୋର ଲକ୍ଷ୍ୟ ଏକ– ମନୁଆଁକୁ ଉଦ୍ଧାର କରିବା । ଏଥିପାଇଁ ମୋ ଜୀବନଟା ଗଲେ କେତେ ରହିଲେ କେତେ ?' ତେଣୁ ସେ ନିଜ ମନକୁ ପୁଣି ଥରେ ଜାରି ଦେଲା ।

ଏତିକିବେଳେ ସେ ଦେଖିଲା, ଜଣେ ମାଓବାଦୀ ଯୁବକ ତା' ପାଖକୁ ଆସି କହିଲା– 'ମଉସା ! ଏବେ ଉଠ । ଶିବିର ସର୍ଦ୍ଦାର କହିଛନ୍ତି, ତମକୁ ସାଙ୍ଗରେ ଧରି ମୋତେ ଦାନ୍ତୁଆଣି ଜଙ୍ଗଲକୁ ଯିବାକୁ ପଡ଼ିବ । ଥାକରେ ତମପାଇଁ ନୂଆ ପୋଷାକ ଅଛି । ଯାଅ ମୁହଁ ହାତ ଧୋଇ ପୋଷାକ ବଦଳେଇ ନିଅ । ସେ ପଟେ ଜଳଖିଆ ହେଉଛି, ଖାଇଦେଇ ଶୀଘ୍ର ବାହାରି ପଡ଼ିବା' ।

ଯୁବକର କଥାକୁ ସନିଆଁ ଆଦେଶ ଭାବରେ ଗ୍ରହଣ କରି ସେହି ଅନୁସାରେ ନୂଆ ପୋଷାକ ପିନ୍ଧି ନିଜକୁ ଥରେ ଦେଖିନେଲା । ପେଟରେ ଗରମ ଗରମ ଥାକେ ପୁରି ଆଉ ଚଣା ତରକାରୀ ପଡ଼ିଛି । ଗତକାଲି ନିଦଟା ବି ବଢ଼ିଆ ହେଇଥିଲା । ଦେହଟା ଫୁର୍ତ୍ତି ଲାଗୁଛି । ଯୁବକଟି ତା' ହାତରେ ଖଣ୍ଡିଏ ଫାର୍ସା ଧରେଇ ଦେଇ କହିଲା– 'ମଉସା ! ବାଟରେ ବହୁତ ଭୟଙ୍କର ଜନ୍ତୁ ହାବୁଡ଼ିବେ ।

ମୋ କାନ୍ଧରେ ଯେଉଁ ବନ୍ଧୁକଟା ଝୁଲୁଛି ନା ଏଥିରେ ବଡ଼ ବଡ଼ ବାଘ ଭାଲୁ ବି ଟଳି ପଡ଼ିବେ । ବହୁତ ଦାମୀ ବନ୍ଧୁକ । ତଥାପି ତମେ ନିଜର ଆତ୍ମରକ୍ଷା ପାଇଁ ଏଇଟାକୁ ମଜବୁତ କରି ଧରିଥିବ । ଆଜି ରାତିଟା ସେଇଠି ରହିବା, ପୁଣି ତମକୁ ସାଙ୍ଗରେ ଧରି ମୁଁ ଏଇଠିକି ଫେରିବି । ଏଇଟା ହେଉଛି ଆମ ପାଇଁ ସର୍ଦ୍ଦାରଙ୍କର ଆଦେଶ ।'

ଏଥର ତାଙ୍କର ଯାତ୍ରା ଆରମ୍ଭ ହେଲା । ଆଗେ ଆଗେ ଚାଲିଛି ଯୁବକ । ବୟସ ପଚିଶ କି ଛବିଶ । ଲମ୍ୱା କଲି, ମୋଟା ନିଶ, କଥା କହିବାବେଳେ ବେଶ୍ ସଂଭ୍ରମ । ତା' କଥାବାର୍ତ୍ତାରୁ ଜଣା ପଡୁଛି ପିଲାଟା ଶିକ୍ଷିତ । ତା' ବିଷୟରେ କିଛି ଜାଣିବାକୁ ସନିଆଁର ଇଚ୍ଛା ହେଉଥିଲା । କାଳେ ପିଲାଟା କିଛି ଖରାପ ଭାବିବ କିମ୍ୱା ସନ୍ଦେହ କରି ସର୍ଦ୍ଦାରଙ୍କ ପାଖରେ କିଛି କହିଦେବ । ତେଣୁ ତା'ର ଇଚ୍ଛା ଥିଲେ ବି ସେ କିଛି ପଚାରି ପାରିଲା ନାହିଁ । ଶୂନ୍‌ଶାନ ଜଙ୍ଗଲ ଭିତରେ ଚୁପ୍‌ଚାପ ହେଇ ଦି'ଜଣ ଚାଲିଥା'ନ୍ତି ।

ନୀରବତା ଭଙ୍ଗକରି ଯୁବକଟି କହିଲା, 'ମଉସା ! ତମେ ଠାକୁର ଠାକୁରଣୀଙ୍କୁ ବିଶ୍ୱାସ କର ?'

ସନିଆଁର ମନ ଆଉ ମୁହଁରେ ଅପୂର୍ବ ଆଭା ଉକୁଟି ଉଠିଲା । ସେ ଯାହା ଚାହୁଁଥିଲା, ସେ ସୁଯୋଗ ଆସି ତା' ହାତ ମୁଠାରେ ପହଞ୍ଚି ଯାଇଛି । ତରବର ହେଇ ସନିଆଁ କହିଲା– 'ଠାକୁର ଠାକୁରାଣୀ ତ ଆମର ରକ୍ଷାକର୍ତ୍ତା । ତାଙ୍କରି ଦୟାରୁ ଆମେ ଖାଇବାକୁ ପାଉଛୁ । ଏ' ମାଟି ଦେହରେ ଜୀବନ ରହିଛି । ତାଙ୍କ ବିନା କ'ଣ ଗଛର ପତ୍ର ହଲିପାରେ ? ସବୁତ ତାଙ୍କରି ଇଚ୍ଛାରେ ଚାଲିଛି । ମୋ ଘର ଆଗରେ ଯେଉଁ ମହୁଲ ଗଛ ଅଛି, ସେଥିରେ ମୋ ବାପା, ଗୋସବାପା, ତାଙ୍କ ବାପା ମାଆମାନେ ଡୁମା ହେଇ ରହିଛନ୍ତି । ସେମାନେ ମରିଗଲା ପରେ ଠାକୁର ଠାକୁରାଣୀ ହେଇ ଯାଇଛନ୍ତି । ତାଙ୍କର ଆଶୀର୍ବାଦ ଆଉ ଅଭିଶାପରେ ଆମର ସୁଖ–ଦୁଃଖ, ବିପଦ–ସଂପଦ ସବୁକିଛି ହୁଏ । ଠାକୁର ଠାକୁରାଣୀଙ୍କୁ ନ ଛାଡ଼ି କିଏ କ'ଣ ବଞ୍ଚିପାରେ ?'

–'ବେଶ୍, ସେଇମିତି ଜଣେ ପ୍ରତ୍ୟକ୍ଷ ଠାକୁରାଣୀ ଏଇ ଜଙ୍ଗଲରେ ଅଛନ୍ତି, ତାଙ୍କରି ନାଆଁ ହେଉଛି 'ଦାନ୍ତୁଆଣି' । ତାଙ୍କୁ ସମସ୍ତେ ମାନନ୍ତି । ସେ ହେଉଛନ୍ତି– ଆମ ସର୍ଦ୍ଦାରଙ୍କର ଆରାଧ୍ୟା ଦେବୀ । ଆମେ ଏବେ ସେଇ ଠାକୁରାଣୀଙ୍କ ପାଖକୁ ଯିବା । ତମେ ଠାକୁରାଣୀଙ୍କ ଆଗରେ ଶପଥ ଗ୍ରହଣ କରିବ । ତା'ପରେ ଯାଇ ପ୍ରଶିକ୍ଷଣ ଶିବିରରେ କାମ ଆରମ୍ଭ କରିବ । ଯୁବକ ଜଣକ ସନିଆଁ ସହିତ କଥାହେବା ବେଳେ ଜଣା ପଡୁଥିଲା, ପିଲାଟା ସିନା ମାଓବାଦୀରେ ମିଶିଛି; କିନ୍ତୁ ଭାରି ଭଦ୍ର । ତା' ଚାଲି ଚଳନରେ ମୋଟେ ହିଂସ୍ରତା ଦେଖା ଯାଉନାହିଁ ।

ସନିଆଁ ଖୋଲା ମନରେ ହାଲୁକା ଭାବରେ ପଚାରିଦେଲା, ଆଛା ବାବା ! ତମର ଘର କୋଉଠି ? ତମର ବାପା ମାଆ କ'ଣ କେବେ ଖୋଜୁ ନାହାନ୍ତି ତମକୁ ?'

ଅଳ୍ପ ହସି ଯୁବକଟି କହିଲା, 'ମଉସା ! ତମେ ଯେଉଁ ମାଓବାଦୀମାନଙ୍କୁ ଦେଖୁଛ, ସେମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି– ଆମରି ଏଇ ଭଗାମୁଣ୍ଡା, ବଡ଼ଖମା, ଆଉ ଶିରିଶପାଳ ଗାଆଁର ପିଲା । ଆଖପାଖ ଅଂଚଳର ଆଦିବାସୀ ପିଲା ବି ଅଛନ୍ତି ବହୁତ । ମୋ ଘର ତ ଏଇ ଜଙ୍ଗଲ ଭିତରେ ଥିବା ଗୋଟିଏ ଛୋଟ ଗାଆଁରେ । ମୋ ନାଆଁ ହେଉଛି ମହେନ୍ଦ୍ର । ମୁଁ ଘରକୁ ମଝିରେ ମଝିରେ ଲୁଚି ଛପି ଯାଏ । କିଛି କିଛି ଟଙ୍କା ଦେଇ ଆସେ । ବାପା–ମାଆ ତ ସବୁଦିନ ପାଇଁ ମନଦୁଃଖ କରନ୍ତି । କେତେବେଳେ କ'ଣ ହେଇଯିବ । ସେଇଥିପାଇଁ ସେମାନେ ମୋତେ ଘରକୁ ଫେରି ଆସିବାକୁ ଖବର ଦିଅନ୍ତି । କିନ୍ତୁ ଥରେ ଯିଏ ମାଓବାଦୀର ମେମ୍ବର ହେଇ ଯାଇଛି, ତାକୁ ଆଉ ଛଡ଼ାଯାଏ ନାହିଁ । ତା'ର ସବୁ ଦରକାରୀ ଜିନିଷ ତାକୁ ଜଙ୍ଗଲ ଭିତରେ ଯୋଗାଇ ଦିଆ ଯାଇଥାଏ । ଯଦି କେହି କେବେ ଖସି ପଳେଇ ଯିବାକୁ ଚେଷ୍ଟା କରେ କିମ୍ବା ଘରକୁ ଯାଇ ଆଉ ଫେରେ ନାହିଁ, ତେବେ ତାକୁ ଧରିଆଣି ଉପଯୁକ୍ତ ଦଣ୍ଡ ଦିଆଯାଏ । ତେଣୁ ଏଠାରୁ ଖସି ଯିବାର ଉପାୟ ନାହିଁ । ବାପାମାଆ ସେ କଥା ଜାଣିଛନ୍ତି, ତେଣୁ ଆଉ ଦୁଃଖ କରିବେ କାହିଁକି ? ଦୁଃଖ କଲେ ବି ଲାଭ କ'ଣ ?'

–ହେଇ ଦେଖ ମଉସା ! ସେପଟ ହେଉଛି, ହରିଚନ୍ଦନପୁର ଜଙ୍ଗଲ । ବହୁତ ଦୂରକୁ ଏ' ଜଙ୍ଗଲ ଲମ୍ବିଛି । ସାରା ଜଙ୍ଗଲଟା ଆମ ଅକ୍ତିଆରରେ ଅଛି । ତା' ଭିତରେ ଆମର ଅନେକ ଗୁଡ଼ିଏ ଗୁପ୍ତ ଆଡ୍ଡା ଆଉ ଶିବିର ରହିଛି । ପରସ୍ପର ଭିତରେ ଆମର ସଂପର୍କ ରହିଛି । ଖାଦ୍ୟପେୟର ଅଭାବ ହେଲେ, ଆମେ ନେଇ ତାଙ୍କୁ ଦେଇଆସୁ । ସେମାନେ ବି ଆମକୁ ଅସ୍ତ୍ରଶସ୍ତ୍ର ସଂଗ୍ରହ କରି ଯୋଗେଇ ଦିଅନ୍ତି । କେବଳ ସେତିକି ନୁହେଁ, ଆନ୍ଧ୍ର ପ୍ରଦେଶ, ବିହାର, ଝାଡ଼ଖଣ୍ଡ ଆଉ ପଶ୍ଚିମବଙ୍ଗକୁ ମଧ୍ୟ ଆମ ଶିବିରରୁ ମାଓବାଦୀମାନେ ଯାଆନ୍ତି । ଦରକାରବେଳେ ସେମାନେ ବି ଏଠିକି ଲୋକ ପଠାନ୍ତି ।'

ଏହିପରି କଥାବାର୍ତ୍ତା ଭିତରେ ଜଙ୍ଗଲ ବାଟ ସରି ଆସିଲାଣି । ସନିଆଁ ଦୂରରୁ ଦାନ୍ତୁଆଣି ମନ୍ଦିର ଦେଖି ପାରିଲାଣି । ଏଇ ମନ୍ଦିର ବିଷୟରେ ସେ ଆଗରୁ ଥରେ ଜଣେ ଲୋକଠୁଁ ଶୁଣିଥିଲା । ଏଇ ଠାକୁରାଣୀ ଭାରି ଡାକୁଆ । ବିପଦବେଳେ ସେ ଓ.. ବୋଲି ଜବାବ ଦିଏ । ଏ' ହେଉଛି ଦୁଃଖ ହାରିଣୀ, ସୁଖ ଦାୟିନୀ, ବିପଦ ହାରିଣୀ ମା' ଦାନ୍ତୁଆଣି । ତାଙ୍କ ଉଦ୍ଦେଶ୍ୟରେ ଦୁଇ ହାତ ଯୋଡ଼ି ଭକ୍ତିରେ ପ୍ରଣାମ କଲା ସନିଆଁ । ମନେ ମନେ କହିଲା– ମା'ଗୋ ! ତୁହି ମୋ ଅନ୍ତର କଥା ଜାଣୁ । ତୋ' ପାଖରେ ମୁଁ ନିଜକୁ ସମର୍ପି ଦେଉଛି । ତୁ ହିଁ ମୋତେ ଭରସା ହେବୁ । ମୋ ପୁଅକୁ ଉଦ୍ଧାର କରିବୁ । ମୋ ଜୀବନ ପ୍ରତି ମୋର ଲୋଭ ନାହିଁ । ମୋର ଦେବତା ଭଳି ପୁଅକୁ ଘଣ୍ଟ ଘୋଡ଼େଇ ରଖିଥିବୁ ମା' । ମୁଁ କେମିତି ତାକୁ କେଉଁଠୁ ପାଇବି, ସେ ଉପାୟ ବତେଇ ଦେବୁ ମା ।'

ମାଓବାଦୀ ଯୁବକ ପଛକୁ ଚାହିଁ ଦେଖିଲା– ସନିଆଁ ଆଣ୍ଠେଇ ପଡ଼ି ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରୁଛି । ସେ ଟିକେ ଆଗକୁ ଚାଲି ଆସିଥିଲା । ପଥୁରିଆ ରାସ୍ତାରେ ଅଟକି ଯାଇ ଟିକେ ଅପେକ୍ଷା କଲା । ସନିଆଁ ପାଖକୁ ଆସିବା ପରେ କହିଲା– 'ମଉସା ! ତମେ ଏ' ବୁଢ଼ା ବୟସରେ ମାଓବାଦୀ ସଂଗଠନକୁ କେମିତି ଆଉ କାହିଁକି ଆସିଛ, ସେକଥା ତ କହିଲ ନାହିଁ ?'

ଯୁବକର ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ସନିଆଁ ଭାବ ପ୍ରବଣ ହୋଇ କାନ୍ଦି ପକେଇଲା । କାନ୍ଦ ଭିତରେ ସେ ଅନେକ କଥା କହିବାକୁ ଇଚ୍ଛା କରୁଥିଲା । କିନ୍ତୁ କହି ପାରିଲା ନାହିଁ ।

ମୋଟାମୋଟି ଭାବରେ ସେ ନିଜର ମନକଥାକୁ ପ୍ରକାଶ କରିଦେଲା । ସବୁକଥା ଶୁଣିସାରି ଯୁବକଜଣକ ଅନ୍ୟମନସ୍କ ହେଇଗଲା । ତାକୁ ଲାଗୁଥିଲା– ସତେ ଯେମିତି ତା' ବାପା କାନ୍ଦି କାନ୍ଦି ତା'ର ମୁକ୍ତିପାଇଁ ସର୍ଦ୍ଦାର ନିକଟରେ ଭିକ୍ଷା ମାଗୁଛି । ତା'ର ମା' କାନ୍ଦି କାନ୍ଦି ମୂର୍ଚ୍ଛା ହେଇଯାଉଛି । ଘରେ ଥିବା ଛୋଟ ଭାଇଟି କହୁଛି, 'ଆଉ ତୁ ଯାଆନା । ଦେଶର ସଂପତ୍ତି ନଷ୍ଟ କରି ମଣିଷ ମାରିବା ପାଇଁ କ'ଣ ମଣିଷ ଜନ୍ମ ହେଇଛି ? ତମ ମାଓବାଦୀମାନଙ୍କ ଦ୍ୱାରା କ'ଣ ସମସ୍ତେ ନ୍ୟାୟ ପାଇ ପାରିବେ ? ନୀତି ନିୟମ ବଦଳି ଯାଇପାରିବ ? କେବେ ନୁହେଁ । ତଥାପି ତୁ କାହିଁକି ଏଥିରେ ମାତିଛୁ ? କେତେବେଳେ କୋଉ ଜଙ୍ଗଲ ଭିତରେ ମରି ପଡ଼ିଥିବୁ, କେହି ତା'ର ପତ୍ତା ବି ପାଇବେ ନାହିଁ ।'

ସେ ଥରେ ଗାଆଁକୁ ଯାଇ ସାନଭାଇକୁ ବୁଝେଇ ଦେଇଥିଲା, 'ମୁଁ ସିନା ଭୁଲ କାମଟିଏ କରି ମାଓବାଦୀରେ ନାଆଁ ଲେଖେଇ ଦେଇଛି । ସେଥିରୁ ଆଉ ମୁକୁଳି ପାରୁନାହିଁ । କିନ୍ତୁ ମନେ ରଖିଥା, କୌଣସି ପ୍ରକାର ପରିସ୍ଥିତିରେ ପଡ଼ି ତୁ ମୋ ଭଳି ଭୁଲ୍ କରିବୁ ନାହିଁ । ଏମିତିକି ଲକ୍ଷ ଲକ୍ଷ ଟଙ୍କା କିଏ ଯାଚିଲେ, ବି ତାକୁ ଚାହିଁବୁ ନାହିଁ । ମୁଁ ତ ମରଣ ଯନ୍ତାରେ ପଶି ସାରିଛି । ତୁ ବଞ୍ଚି ରହିବୁ । ବାପା ମାଆଙ୍କ ଦୁଃଖ ବୁଝିବୁ । ବାହାଚୋରା ହେଇ ବଂଶ ରକ୍ଷା କରିବୁ । ମୋ ଆଶା ସବୁଦିନ ପାଇଁ ଛାଡ଼ିଦେବୁ ।'

ସାନଭାଇ ସେଦିନ ବହୁତ କାନ୍ଦିଥିଲା । ସେ ଏବେ କଲେଜକୁ ଗଲାଣି । ମାଓବାଦୀଙ୍କ ବିଷୟରେ ଅନେକ କଥା ଖବର କାଗଜରୁ ସେ ପଢୁଛି । ବଡ଼ ବଡ଼ ନେତା ମାଓବାଦୀଙ୍କ ବିରୁଦ୍ଧରେ ଯେଉଁ ଭାଷଣ ଦେଉଛନ୍ତି,ତାକୁ ବି ଶୁଣୁଛି । କମ୍ବିଂ ଅପେରେସନ୍, ଗ୍ରୀନ୍ ହଣ୍ଟ୍ ଭଳି ବିଭିନ୍ନ ପ୍ରକାର ଅପରେସନ୍ ମାଧ୍ୟମରେ ଦିନକୁ କେତେ ମାଓବାଦୀ ମରୁଛନ୍ତି, ତା'ର ଠିକ୍ ହିସାବ କିଏ ବା ରଖୁଛି ?

ସବୁକଥା ସେ ଜାଣୁଛି । ଗାଆଁଲୋକେ ଭୟରେ ସିନା ମାଓବାଦୀଙ୍କୁ କିଛି କହି ପାରୁ ନାହାନ୍ତି, କିନ୍ତୁ ହିଂସା, ହତ୍ୟା ଓ ଲୁଣ୍ଠନ ଭଳି କାମକୁ କିଏ ବା ପସନ୍ଦ କରିବ ? ଆମରି ପାଇଁ ତ ଆମ ଘର ଲୋକ, ଗାଆଁ ଲୋକେ ଆଉ ସରକାରଙ୍କର ପୁଲିସ ବି ଆତଙ୍କିତ ହୋଇ ରହିଛନ୍ତି । କେତେବେଳେ କାହା ଉପରେ ଆକ୍ରମଣ ହେବ କହିହେବ ନାହିଁ । ବାପା ମାଆ ଯିଏ ଆମକୁ ଜନ୍ମ ଦେଇ ଖୋଇପେଇ ବଢ଼େଇଥିଲେ, ସେମାନେ କ'ଣ ଆମଠାରୁ ଏଇୟା ଆଶା କରିଥିଲେ ? କିନ୍ତୁ ହାଏ– ଉପାୟ ନାହିଁ । ମୁଁ ସିନା ଯାଇ ପାରିବି ନାହିଁ । ଅନ୍ୟକୁ ଯଦି କେବେ କୌଣସି ଉପାୟରେ ସାହାଯ୍ୟ କରି ପାରିବି, ତେବେ ସିନା ଭଗବାନ ମୋତେ କ୍ଷମା କରିବେ । ମୁଁ ସମସ୍ତଙ୍କ ଦୃଷ୍ଟିରେ ଅପରାଧୀ ଭାବରେ ପରିଚିତ ହୋଇ ସାରିଛି । ଭଗବାନଙ୍କ ଦରବାରରେ ଯେଉଁଦିନ ମୁଁ ଅପରାଧୀ ଭାବରେ ପରିଚିତ ହେଇଯିବି, ସେହିଦିନ ହେବ ମୋ ଜୀବନର ଶେଷଦିନ ।'

ସନିଆଁ ଲକ୍ଷ୍ୟ କଲା– ଯୁବକଟି ମନରେ ଅନେକ ଅକୁହା କଥା ରହିଯାଇଛି । ସେ କହି ପାରୁନି କି ସହି ପାରୁନି । ତା' ଆଖିର ଲୁହ କହୁଛି– ସେ ନିରୁପାୟ ।

ନୀରବତା ଭଙ୍ଗକରି ସନିଆଁ କହିଲା– ପୁଅରେ ! ଠାକୁରାଣୀଙ୍କ ମନ୍ଦିର ହେଇଗଲା । ତୁ ଜୁହାର ହେଇ ଠାକୁରାଣୀଙ୍କୁ ମନଖୋଲି ସବୁ କଥା ଜଣେଇଦେ । ସେ ତୋତେ ନିଶ୍ଚୟ ମୁକ୍ତିଦେବେ । ମନସ୍ତାପ କରିବାକୁ ତତେ ଏଇଠି ଗୋଟାଏ ସୁଯୋଗ ମିଳିଛି । ଏଇ ଠାକୁରାଣୀଙ୍କ ଆଗରେ ମୁଁ ତତେ ଧରମ ପୁଅ ଭାବରେ ଗ୍ରହଣ କରିନେଲି । ତୁ ମୋର ଏବେ ସାହା ଭରସା । ତୁ ଯାହା କହିବୁ, ତାହା ମୁଁ ଅକ୍ଷରେ ଅକ୍ଷରେ ପାଳନ କରିବି ।'

ଯୁବକଟିର ସମ୍ବେଦନଶୀଳ ହୃଦୟ ସନିଆଁର ମଧୁର ଭାଷାରେ ତରଳିଗଲା । ଅନେକ ଦିନ ପରେ ସେ ପିତାଙ୍କର ବାତ୍ସଲ୍ୟ ମମତାକୁ ଅନୁଭବ କଲା । ତା' ମୁଣ୍ଡ ତଳକୁ ହେଇଗଲା । ତା' ପାଟିରୁ ବାହାରି ପଡ଼ିଲା– 'ଭଗବାନ ବୋଧେ ତମକୁ ମୋ ପାଖକୁ ପଠେଇଛନ୍ତି । ତମେ ଆଜିଠାରୁ ମୋର ଧର୍ମର



ପିତା ହେଲ । ମୁଁ ତମର ସ୍ନେହର ପୁଅ ହିସାବରେ ଯାହା କରିବାର କଥା ସୁବିଧା ଦେଖି କରିବି । ଚାଲ ତମର ଶପଥ ନେବା କାମଟି ଶେଷ କରିଦେବା । କୁହ, ମୁଁ ମାଆଙ୍କ ଆଗରେ ଶପଥ କରି କହୁଛି– 'ମାଓବାଦୀ ସଂଗଠନର ଗୁପ୍ତ ତଥ୍ୟ କୌଣସି ଜାଗାରେ ପ୍ରକାଶ କରିବି ନାହିଁ । ସଂଗଠନ ପ୍ରତି ବିଶ୍ୱାସ ଘାତକତା କରିବି ନାହିଁ । ଯଦି କରିବି, ଉପଯୁକ୍ତ ଦଣ୍ଡ ପାଇବି ।'

ସନିଆଁ ଅତ୍ୟନ୍ତ ନିଷ୍ଠାର ସହ ଶପଥ ପାଠକୁ ଦୋହରାଇଲା । ଦୁହେଁ ସେଦିନ ଖୋଲା ମନରେ କଥାବାର୍ତ୍ତା ହେଇ ଶିବିରକୁ ଫେରିଲେ । ସନିଆଁ ରାତିସାରା ଯୁବକ ଓ ତା'ମଧ୍ୟରେ ହେଇଥିବା କଥାକୁ ଥରକୁ ଥର ଭାବି ହେଉଥିଲା ।



# ଦଶ

ସକାଳୁ ସକାଳୁ ଜଣେ ମାଓବାଦୀ ଯୁବକ ଆସି ସନିଆଁକୁ କହିଲା– 'ଶିବିର ସର୍ଦ୍ଦାର ଆଦେଶ ଦେଇଛନ୍ତି, ମୋ ସାଙ୍ଗରେ ଚାଲ । ତମକୁ ଆଜିଠାରୁ କାମ କରିବାକୁ ପଡ଼ିବ । ମହିଳା ଶିବିରରେ ।'

ସନିଆଁ କିଛି ନ କହି ସିଧା ଚାଲିଲା, ସେ ଯୁବକର ପଛେ ପଛେ । ବଡ଼ ଶିବିରଠାରୁ ମହିଳା ଶିବିର ପ୍ରାୟ ତିନି କିଲୋମିଟର ଦୂର । ଜଙ୍ଗଲ ଭିତରେ ଏ' ଶିବିରଠାରୁ ସରୁ ଚଲା ରାସ୍ତାଟିଏ ଲମ୍ବି ଯାଇଛି, ସେ ଶିବିର ପାଖକୁ । ଶିବିର ଚାରିପଟେ କଡ଼ା ପହରା । ଛୋଟ ବଡ଼ ଅନେକ ଗୁଡ଼ିଏ ଚାଳଘର । ସ୍ୱତନ୍ତ୍ର ଭାବରେ ତିଆରି ହୋଇଛି– ରୋଷେଇ ଘର । ନୂଆକରି ଆସିଥିବା ମହିଳାମାନଙ୍କ ପାଇଁ ଗୋଟାଏ ଅସ୍ଥାୟୀ କୁଡ଼ିଆ । ବଂଧୁକ ଚଳାଇବା, ତୀର ଚଳାଇବା, ବର୍ଚ୍ଛା ଫିଙ୍ଗିବା ଶିକ୍ଷା ଦେବାପାଇଁ ସ୍ୱତନ୍ତ୍ର ପଡ଼ିଆ ରହିଛି । ଖାଇବା ପିଇବାର ସବୁ ପ୍ରକାର ବ୍ୟବସ୍ଥା ଅଛି । କୌଣସି ବିପଦ ପଡ଼ିଲେ, ଖସି ପଳାଇବା ପାଇଁ ମଧ୍ୟ ଗୁପ୍ତ ସୁଡ଼ଙ୍ଗ ରାସ୍ତା ରଖାଯାଇଛି । ଏ'



ସମସ୍ତ ସ୍ଥାନକୁ ଦେଖାଇ ଦେଇସାରି ଯୁବକ ଜଣକ ମହିଳା ଶିବିର ସର୍ଦ୍ଦାର ପାଖକୁ ସନିଆଁକୁ ନେଇଗଲା ।

ସର୍ଦ୍ଦାର ସନିଆଁକୁ ଦେଖୁ ଦେଖୁ କହିଲା– 'କିରେ ବୁଢ଼ା ! ତୁ କି କି କାମ କରି ପାରିବୁ କହ । ତୁ ତ ବୁଢ଼ାଲୋକ, ବଣ ଜଂଗଲରେ ଦୌଡ଼ାଦୌଡ଼ି କରି ପାରିବୁ ? କ'ଣ ପାରିବୁ ତ ? ଶୁଣ, ଆମର କେତେଜଣ ନୂଆ ଝିଅ ମେମ୍ବର ହେଇଛନ୍ତି । ସେମାନଙ୍କୁ ଦେଖାଶୁଣା କରିବା ଦାୟିତ୍ୱ ତତେ ଦିଆଯିବ ।'

ସନିଆଁ ମୁଣ୍ଡ ହଲେଇ ସମ୍ମତି ଜଣାଇଲା । ଆଉ ଜଣେ ମହିଳା ମାଓବାଦୀ ତାକୁ ସାଙ୍ଗରେ ଶିବିର ଭିତରେ ଥିବା ଅସ୍ଥାୟୀ କୁଡ଼ିଆକୁ ନେଇଗଲା । କହିଲା, 'ଦେଖ ବୁଢ଼ା ! ଏମାନେ ସବୁ ନୂଆ କରି ଶିବିରକୁ ଆସିଛନ୍ତି । ପୋଷା ମାନି ନାହାନ୍ତି । ଏମାନଙ୍କ ମନନେଇ କାମ କରିବୁ । ବାପାଭଳି ବ୍ୟବହାର ଦେଖାଇ ବୁଝାବୁଝି କରିବୁ । ଏବେ ଯେଉଁ ଝିଅଟା ଆସିଛି, ସେଇଟା ଭାରି ଫୁଲେଇ । ଆସିବା ଦିନରୁ ଖାଲି କାନ୍ଦୁଛି । ବାପା ଗେହ୍ଲା ତ, ଦିନରାତି ବାପା ବାପା ହେଉଛି । ଶୋଷ ଲାଗିଲେ ପାଣି ପିଉଛି ସିନା, ହେଲେ କିଛି ଖାଉନାହିଁ । ଏମିତି ହେଲେ ମରିଯିବ । ତାକୁ ବୁଝେଇ ଶୁଝେଇ ଖାଇବାକୁ ଦେବୁ । ତା'ର ସେବା ଯତ୍ନ ଠିକ୍ ଭାବରେ ନେଲେ, ସେ ଆମର ପୋଷା ମାନିବ । ଝିଅଟା ପାଠଶାଠ ପଢ଼ିଛି । ଦେଖିବାକୁ ସୁନ୍ଦରୀ । ଜଣା ପଡୁଛି ଥିଲାବାଲା, ବଡ଼ଘରର ଝିଅ । ସର୍ଦ୍ଦାର କହିଛନ୍ତି– ସେ ଟ୍ରେନିଂ ପାଇ ସାରିଲେ, ମାଓବାଦୀ ରାଣୀ ହେବ । ତା' ଦ୍ୱାରା ବହୁତ କିଛି କାମ ହେଇ ପାରିବ । ତା'ର ସେବା ଯତ୍ନ ଟିକେ ଭଲ ଭାବରେ କରିବୁ । ତାଙ୍କରି କୁଡ଼ିଆରେ ଖାଇବୁ । ତା' ପାଖ କୁଡ଼ିଆରେ ଶୋଇବୁ । କିଛି ଅସୁବିଧା ହେଲେ ସିଧା ଶିବିର ସର୍ଦ୍ଦାରଙ୍କୁ ଜଣେଇବୁ । ଯା'– ଭିତରକୁ ଯା', ସେମାନଙ୍କ ସହିତ କଥାବାର୍ତ୍ତା କରି ପରିଚିତ ହେଇଯା– ମୁଁ ଚାଲିଲି ।' ଏତିକି କହି ମହିଳା ମାଓବାଦୀ ଜଣକ ସେଠାରୁ ଚାଲିଗଲା ।

ସନିଆଁ ସନ୍ତର୍ପଣରେ କୁଡ଼ିଆ ଭିତରକୁ ପଶିଲା । କିଛି ସମୟ ଠିଆହେଇ ଚାରିଆଡ଼କୁ ବୋକାଙ୍କ ଭଳି ଚାହିଁଲା । ଯେଉଁ କେତେଟା ନୂଆ ମାଓବାଦୀ ମେମ୍ବର ହେଇଥିବା ଝିଅ ଉପସ୍ଥିତ ଥିଲେ, ସେମାନଙ୍କ ଭିତରୁ ଜଣେ ଆସି କହିଲା, 'ମଉସା ! ତମେ ଆଜିଠାରୁ ଆମ ସୁଖଦୁଃଖର ସାଥୀ ହେଲ । ତମ ନାଆଁ କ'ଣ, କୋଉଠୁ ଆସିଛ, ଆଗରୁ କୋଉଠି କାମ କରୁଥିଲ, ସେକଥା କୁହ । ଆମେ ତ ତମର ଝିଅଭଳି । ଆମ କଥାକୁ ଧରିବ ନାହିଁ । ଆମେ ଭୁଲ କଲେ ଆକଟ କରିବ । ବିପଦବେଳେ ସାହାଯ୍ୟ କରିବ । ଆମେ ପାଞ୍ଚଜଣ ଝିଅ, ନିଜ ଇଚ୍ଛାରେ ମାଓବାଦୀ ହେଇଛୁ । ସେଇ ଗୋଟାଏ ଝିଅ, କୋଉଠୁ କେମିତି ଆସିଛି କେଜାଣି, ଖାଲି ମୁହଁ ଗୁଞ୍ଜି କାନ୍ଦି ଚାଲିଛି । କାହାରି କଥାର ଜବାବ ଦେଉନାହିଁ କି ତା'ର ପରିଚୟ ବି ଦେଉନାହିଁ । ନୂଆକି ସହରରୁ ଧରା ହେଇ ଆସିଛି ତ । ସେ ନାକ କାନ୍ଦୁରୀ ଝିଅଟା କଥା ତମେ ବୁଝାବୁଝି କର । ଆମକଥା ଭୁଲି ଯା ।'

ଝିଅର କଥା ଶୁଣି ସନିଆଁ ଅନ୍ୟମନସ୍କ ହେଇ ଯାଇଥିଲା । ସେ ଭାବୁଥିଲା, ଓକିଲବାବୁ ଆଉ ଡାକ୍ତରବାବୁ ଯେଉଁ ଝିଅ କଥା କୁହାକୁହି ହେଉଥିଲେ, ଏ' ନିଶ୍ଚେ ସେଇ ଝିଅ ରତ୍ନପ୍ରଭା ହେଇଥିବ । ଯାହାହେଉ, ଠିକ୍ ଜାଗାରେ ଭଗବାନ ମୋତେ ପହଞ୍ଚାଇ ଦେଇଛନ୍ତି । ଦେଖାଯାଉ, କ'ଣ ହେଉଛି ।

ମାଓବାଦୀ ଝିଅଟା ଏତିକି କହି ଅନ୍ୟ ଝିଅମାନଙ୍କୁ ନେଇ କୁଡ଼ିଆ ସେପଟକୁ ଚାଲିଗଲା । ସେହି ନାକ କାନ୍ଦୁରୀ ଝିଅଟା ଏକୁଟିଆ କୁଡ଼ିଆ ଘରକୋଣରେ ବସି ସୁଁ ସୁଁ ହେଉଥାଏ । ସନିଆଁ ସେ ଝିଅଟା ପାଖକୁ ଯାଇ କଅଁଳେଇ ଡାକିଲା, 'ମାଆ ! ମୁଁ ପରା ତୋ' ବାପାଭଳିଆ ଲୋକ । ଉଠ, ତୁ ଆଗ ତୋ' ଦେହଟା ବଞ୍ଚେଇ ରଖିଲେ ସିନା ଯାହା କିଛି କାମ କରିପାରିବୁ । ଖାଇବା ପିଇବା ନ କଲେ, ଦେହ ମନ ସବୁ ଦୁର୍ବଳ ହେଇଯିବ । ମୋ ରାଣ ମାଆ । ତୁ ଭାତ ମୁଠାଏ ଖାଇଦେ । ଦେହରେ ଟିକେ ବଳ ଆସିଯାଉ ।

ମୋ କଥା ମାନ । ମୁଁ ତୋ' ପାଖେପାଖେ ରହିବି । ତୋ'ର ଭଲମନ୍ଦ ଦାୟିତ୍ୱ ଏବେ ମୋ ଉପରେ । ତୋ'ରି ଭଳି ମୁଁ ବି ଗୋଟାଏ ଦୁଃଖୀ ମଣିଷ । ମୁଁ ତୋ' ବିଷୟରେ ବହୁତ କିଛି ଖବର ରଖିଛି । ସୁବିଧା ଦେଖି କହିବି ।'

ସନିଆଁ ବୁଢ଼ାର କଥାକୁ ଏତେବେଳଯାଏ ଝିଅଟା କେବଳ ଶୁଣି ଚାଲିଥିଲା । ଯେତେବେଳେ ସେ ଶୁଣିଲା, ତା' ବିଷୟରେ ବୁଢ଼ା ବହୁତ କଥା ଜାଣିଛି, ପୁଣି ସୁବିଧା ଦେଖି କହିବ, ତା' ମନରେ ଆଶାର ଆଲୋକ ଜଳି ଉଠିଲା । କିଛି ଗୋଟାଏ ପାଇଲା ଭଳି ସେ ଅନୁଭବ କଲା । ମୁଣ୍ଡ ଉଠେଇ ସନିଆଁକୁ ଚାହିଁଲା । ପରସ୍ପର ପରସ୍ପରକୁ ଅନେଇଲେ । ଏଥର ସନିଆଁ ନିଶ୍ଚିତ ହେଲା, ଏ' ଝିଅ ହେଉଛି ସେହି ରତ୍ନପ୍ରଭା । ସେ ଆଗରୁ ଏହି ଝିଅର ଫଟୋକୁ ଦେଖିଛି । ଠିକ୍ ସେହି ମୁହଁ, ସେହି ନାକ । ଏବେ ତା'ର କର୍ତ୍ତବ୍ୟ କ'ଣ ? ଏ' ଝିଅଟା ବିନା ଦୋଷରେ ଧରାହେଇ ଆସିଛି ଜଙ୍ଗଲକୁ । ବନ୍ଦୀ ଜୀବନ କାଟୁଛି, କେଡ଼େ ଦୁଃଖରେ । ଏ' ସବୁର ମୂଳ କାରଣ ହେଉଛି– ତା' ପୁଅ ମନୁଆଁ । ଓକିଲବାବୁ ସତ କହୁଥିଲେ, ମୋ ପୁଅକୁ ମାଓବାଦୀରେ ମିଶେଇବା ପାଇଁ ଏ' ହେଉଛି ଗୋଟାଏ ଚାଲ୍ । ସତରେ ଚିଠି କେଇଖଣ୍ଡ, ଆଉ ଫଟୋ ଦେଖି ନଥିଲେ, ଏ' ଘଟଣାର ଫନ୍ଦି ମୋତେ ଜଣା ପଡ଼ି ନଥା'ନ୍ତା । ସରପଞ୍ଚ ଶଙ୍କର ଆଉ ଚନ୍ଦୁକୁ ମୁଁ ସାରା ଜୀବନ ଦୋଷୀ ବୋଲି କହିଥା'ନ୍ତି । ହେ ଭଗବାନ ! ମୋତେ ବୁଦ୍ଧିଦିଅ । ମୋ ପୁଅ ମନୁଆଁ ପଛକେ ଉଦ୍ଧାର ନ ପାଇଲା ନାହିଁ, ଏ' ଝିଅଟାକୁ କେମିତି ଉଦ୍ଧାର କରିପାରିବି, ତା'ର ଉପାୟ ମୋତେ ବତେଇ ଦିଅ ।'

ସନିଆଁ ପ୍ରକୃତିସ୍ଥ ହେଲା । ରତ୍ନପ୍ରଭା ଦେଖିଲା– ବୁଢ଼ାଟା ତା'ର ପାଦଠାରୁ ଆଖି ପର୍ଯ୍ୟନ୍ତ ନିରୀକ୍ଷଣ କରି ଦେଖି ଚାଲିଛି । ସେ ଭାବୁଥିଲା, 'ସତେ ଯେମିତି ସେ ତା'ର ଅତି ନିଜର ଘନିଷ୍ଠ ଲୋକ । ବୁଢ଼ାଟା ବୋଧହୁଏ, ତାକୁ ଆଗରୁ କେଉଁଠି ଦେଖିଛି, ନଚେତ୍ ଭଲ ଭାବରେ ଚିହ୍ନିଛି । ସେ ପୁଣି

କହୁଛି, ମୋ ବିଷୟରେ ସେ ବହୁତ କଥା ଜାଣିଛି । ମୁଁ ତ ଆଜିଯାଏ, ମୋର ନାମ କି ଠିକଣା କାହାକୁ କହିନାହିଁ । ମୋ ବିଷୟରେ ଏ' ବୁଢ଼ା ମାଓବାଦୀଜଣକ ଏତେ କଥା କେଉଠୁ କେମିତି ଜାଣିଲା ? ଏମିତି ବି ହେଇପାରେ, ମୋତେ ଅପହରଣ କରିବା ପୂର୍ବରୁ ଏ' ବୁଢ଼ା ନିଶ୍ଚୟ ଗୁପ୍ତରେ ମୋ ବିଷୟରେ କିଛି ତଥ୍ୟ ସଂଗ୍ରହ କରି ମାଓବାଦୀକୁ ଜଣେଇଛି । ମାନସ ସାଙ୍ଗରେ ମୋର ସଂପର୍କ କଥା ବି ତାକୁ ଜଣାଥିବ । ମାନସ ଏବେ କେଉଁଠି, କେମିତି ଅଛି, ତାକୁ ପଚାରିଲେ, ସେ ନିଶ୍ଚୟ କହିପାରନ୍ତା ।

ନୀରବତା ଭଙ୍ଗକରି ରତ୍ନପ୍ରଭା ପଚାରିଦେଲା– 'ମଉସା ! ତମେ ମାନସ ବିଷୟରେ ବି କିଛି ଜାଣିଛ ?'

–'କୋଉ ମାନସ କଥା ପଚାରୁଛୁ ଝିଅ । ମାନସ ପଣ୍ଡା ନା ମାନସ ମୁଣ୍ଡା କଥା ?'

ଏକା କଥା ମଉସା । ମାନସ ପଣ୍ଡା ଯିଏ, ମାନସ ମୁଣ୍ଡା ସିଏ । ତାକୁ ମୁଁ ବାହା ହେବାକୁ ଠିକ୍ କରିଥିଲି । ଆମର ବ୍ରାହ୍ମଣ ଘର ତ । ଘରେ ସମସ୍ତେ ମାନସ ମୁଣ୍ଡା ନାଆଁକୁ ଶୁଣି ଅଲଗା କିଛି ଭାବିବେ । ତେଣୁ ମୁଁ କୋର୍ଟରେ ଯାଇ ତା' ନାଆଁରୁ ମୁଣ୍ଡାକୁ ଏଫିଡ଼େଭିଟ୍ କରି ବଦଳାଇ ଦେବାକୁ କହିଥିଲି । ସେ ମୋତେ ବାହାହେବା ଉଦ୍ଦେଶ୍ୟରେ ମୋ ପାଇଁ ଏଫିଡ଼େଭିଟ୍ କରି ମୁଣ୍ଡାରୁ ପଣ୍ଡା ହେଇ ଯାଇଛି । ଆସ ମଉସା ! ମୋ ପାଖରେ ବସ । ମାନସ କଥା ଟିକେ କୁହ । ତା' ବିଷୟରେ ମୁଁ କିଛି ଜାଣି ପାରୁନାହିଁ । ତା' ବିନା ମୁଁ ବଞ୍ଚିପାରିବି ନାହିଁ ମଉସା । ତା' ବିଷୟରେ ଯଦି କିଛି କହିବ, ତେବେ ଯାଇ ମୁଁ ଖାଇବି ।'

–ସନିଆଁ ଆଖିରେ ଲୁହ ଦେଖି ରତ୍ନପ୍ରଭା ବ୍ୟସ୍ତ ହେଇ ଠିଆହେଇ ପଡ଼ିଲା । ତା' ହାତକୁ ଟାଣିନେଇ ପାଖରେ ବସେଇ ଦେଲା । ନିଜ ଓଢ଼ଣୀ କାନିରେ ତା' ଆଖିରୁ ଲୁହ ପୋଛି ପକାଇଲା । ଚମ୍ପାକଢ଼ି ପରି କଅଁଳ ଆଙ୍ଗୁଳିର ସ୍ପର୍ଶ ପାଇ ସନିଆଁ ଚମକି ପଡ଼ିଲା । ଏଭଳି ଭାବରେ ଆଉ କିଏ

କେବେ ଆଗରୁ ତା' ଆଖିରୁ ଲୁହ ପୋଛି ଦେଇଛି ତା' ମନେ ପଡୁ ନଥିଲା । ସେ ଅନୁମାନ କରୁଥିଲା ଯେତେବେଳେ ସେ ଛୋଟ ଥିବ, ତା' ମାଆ ନିଶ୍ଚୟ ଏମିତି ତା' କାନିରେ ଲୁହ ପୋଛି ଦେଇଥିବ । ଅନେକ ବର୍ଷ ପରେ ବୁଢ଼ାକାଳରେ ପୁଣି ସେ ମାଆର ସ୍ନେହ ଅନୁଭବ କଲା । ମାଆର ହାତ ଆଙ୍ଗୁଳି ତ ସବୁ ପିଲାଙ୍କ ପାଇଁ କଅଁଳ ଲାଗେ । ମାଆ ରତ୍ନପ୍ରଭା ହାତର ସ୍ପର୍ଶ ତାକୁ ମିଠା ଲାଗିବ ନାହିଁ କେମିତି ?

ହୃଦୟବାନ ଲୋକଙ୍କୁ ସବୁବେଳେ ଭଲ ହୃଦୟଟିଏ ମିଳେ । ପ୍ରେମୀ ମଣିଷଙ୍କୁ ପ୍ରେମ ହିଁ ମିଳିଥାଏ । ସେହିପରି ହିଂସ୍ର ଲୋକକୁ ଦୁନିଆଟା ହିଂସ୍ରଲାଗେ । ଏଠି ତ ସ୍ନେହ ମମତାର କଥା । ବୁଢ଼ା ସନିଆଁ ଆଉଜି ପଡ଼ିଲା ରତ୍ନପ୍ରଭାର କୋଳକୁ । ରତ୍ନପ୍ରଭା ଆଉଁସି ପକେଇଲା, ଧର୍ମପିତା ସନିଆଁର ମୁଣ୍ଡ ଦେହକୁ । ଓଃ ! କି ଆନନ୍ଦମୟ ମୁହୂର୍ତ୍ତ । ଯୁବତୀ ମାଆଙ୍କ କୋଳରେ ବୃଦ୍ଧ ଶିଶୁ । ଏହି ଦୃଶ୍ୟଟିକୁ ଆଉ କେହି ଦେଖିଥିଲେ– ଚରମ ଆନନ୍ଦ ଅନୁଭବ କରିଥା'ନ୍ତା । କିନ୍ତୁ ଏ' ଦୃଶ୍ୟକୁ ଉପଭୋଗ କରିବାକୁ ସେ କୁଡ଼ିଆରେ ଆଉ କେହି ନ ଥିଲେ ।

କିଛି ମୁହୂର୍ତ୍ତ ଦୁହେଁ ନୀରବ । ସନିଆଁ କହିଲା– 'ମାଆ ରତ୍ନପ୍ରଭା ! ତୁ ଆଜି ଏ' ଯେଉଁ ଦୁଃଖ ପାଉଛୁ, ସେଥିପାଇଁ ମୁଁ ନିଜକୁ ବଡ଼ ଅପରାଧୀ ମନେ କରୁଛି । ମାନସକୁ ମୁଁ ଜନ୍ମ ଦେଇ ନଥିଲେ, ଏଭଳି ଦୁଃଖଦ ପରିସ୍ଥିତି ସୃଷ୍ଟି ହେଇ ନଥା'ନ୍ତା । ତୁ ବାପା ମାଆଙ୍କ ସାଥୀରେ ଏବେ ରାଜ ଉଆସରେ ଥା'ନ୍ତୁ । ମୁଁ ହତଭାଗ୍ୟ ହେଉଛି, ତୋ'ର ପ୍ରିୟ ମାନସର ବାପା । ତାକୁ ଖୋଜି ଖୋଜି ଆଜି ତୋ' ଦୁଆରେ ପହଞ୍ଚି ଯାଇଛି । ମୋତେ ତୁ ଆଗ କ୍ଷମା କରିଦେ ମା' । ଯଦି ପାରୁଛୁ, ମୋତେ କଠିନରୁ କଠିନତମ ଦଣ୍ଡ ଦେ । ମୁଁ ତାକୁ ମଥାପାତି ସହିନେବି' ।

–'ନାଇଁ ମଉସା ! ତମେ ମୋତେ ବ୍ୟସ୍ତ ହୁଅନା । ଏ'ସବୁ ଅଘଟଣ ପାଇଁ ତମେ ମୋଟେ ଦୋଷୀ ନୁହଁ । ବରଂ ମୋ ପାଇଁ ତମେ ବାପ ପୁଅ

ତୁହେଁ ଏ' ଦଣ୍ଡ ଭୋଗ କରୁଛ । ମୋ ପାପକର୍ମପାଇଁ ମୁଁ ତମ ଦି' ଜଣକୁ ଏତେ କଷ୍ଟ ସହିବାକୁ ବାଧ କରିଛି । ଏଥିପାଇଁ ବରଂ ତମେ ମୋତେ କ୍ଷମା କରିଦିଅ । ଏବେ କୁହ ମଉସା ! ମାନସ କେମିତି ଅଛି ? କେଉଁଠି ଅଛି' ?

–'ଆରେ ମା' ! ମୁଁ କ'ଣ ତା'ର ଖବର କିଛି ରଖିଛି ? ସିଏ ତ ତତେ ଉଦ୍ଧାର କରିବା ପାଇଁ ବଳେ ବଳେ ଆସି ମାଓବାଦୀ ହେଇ ଯାଇଛି । ସିଏ ଏବେ କେଉଁଠି ଅଛି, କେମିତି ଅଛି, ସେକଥା କିଛି ଜାଣିନାହିଁ' ।

–'ମଉସା ! ତମେ ମୋ ପାଇଁ ଭଗବାନଙ୍କ ଦୂତ ହେଇ ଆସିଛ । ଏବେ ତମେ ହିଁ ମୋର ସାହା ଭରସା । ତମେ ମୋତେ ଚିହ୍ନିଛ, ଆଉ ମୁଁ ତମକୁ ଜାଣେ, ସେ କଥା ଯେମିତି ଏଠି କେହି ନ ଜାଣନ୍ତି । ଆମର କଥାବାର୍ତ୍ତା, ଚାଲି ଚଳନକୁ ଏମାନେ ଲକ୍ଷ୍ୟ କରିବେ । ତେଣୁ ତମେ ତମର କାମ କରୁଥିବ । ମୁଁ ତମ କଥା ମାନି ଏବେ ଖିଆପିଆ କରିବି । ମୋର ସୁରକ୍ଷା ଦାୟିତ୍ୱ ଏବେ ତମର । ଆମେ ନିଜ ନିଜ ବୁଦ୍ଧିରେ ମାନସର ସନ୍ଧାନ କରୁଥିବା । ତମେ ଯଦି କିଛି ଖବର ପାଅ, ତେବେ ମୋତେ ଏକୁଟିଆ ବେଳେ କହିଦେବ । ମୁଁ ଯେମିତି ହେଲେ, ସବୁ ପ୍ରକାର ପରିସ୍ଥିତିର ସମ୍ମୁଖୀନ ହେଇ ତାଙ୍କୁ ନିଶ୍ଚୟ ଦେଖା କରିବି ।'

–'ହଉ ମା' ! ତୁ ଯା', ଏବେ ଯାଇ ଦି'ଟା ଖିଆପିଆ କର । ମୁଁ ବାହାରକୁ ଯାଇ ଆଖପାଖରେ ଟିକେ ବୁଲାବୁଲି କରୁଛି । ହଁ, ମୋର ଏଇ ମାଓବାଦୀଙ୍କ ଭିତରେ ମହେନ୍ଦ୍ର ନାମରେ ଜଣେ ଯୁବକ ସହିତ ପରିଚୟ ହେଇ ଯାଇଛି । ସେ ବି ମୋତେ ଧର୍ମପିତା କରିଛି । ତା' ସହାୟତାରେ କିଛି ଗୋଟାଏ କାମ ହେଇପାରିବ ବୋଲି ମୁଁ ଆଶା କରୁଛି । ତୁ ଥା'– ମୁଁ ଟିକେ ବାହାରକୁ ଯାଉଛି । ସେ ଝିଅ ମାଓବାଦୀମାନେ ଇଆଡ଼କୁ ଆସୁଛନ୍ତି' ।



# ଏଗାର

ଏହା ଭିତରେ ସନିଆଁ ଶିବିରରେ ଆଠ ଦଶ ଦିନ ରହି ସାରିଲାଣି । ଖାଇବା ପିଇବା ଆଉ ମହିଳା ମାଓବାଦୀଙ୍କ ସେବା କାର୍ଯ୍ୟରେ ସେ ହେଳା କରିନାହିଁ । ରତ୍ନପ୍ରଭା ପ୍ରତି ତା'ର ଭାରି ଆଦର ଯତ୍ନ । ଏବେ ରତ୍ନପ୍ରଭା ଅନ୍ୟମାନଙ୍କ ଭଳି ଖିଆପିଆ ଠିକ୍ ଭାବରେ କରୁଛି । ଅନ୍ୟମାନେ ଆଉ ତା' ପାଇଁ ବ୍ୟସ୍ତ ହେଉ ନାହାନ୍ତି । ବରଂ ସନିଆଁ ମଉସାକୁ ସେମାନେ ପ୍ରଶଂସା କରି କହୁଛନ୍ତି– 'ବୁଢ଼ାଟା କି ମନ୍ତ୍ର ଜାଣିଛି କେଜାଣି, ସହରୀ ଝିଅଟା ତା' ଆଙ୍ଗୁଳି ଅଗରେ ନାଚୁଛି । ତା' କଥାକୁ ଅକ୍ଷରେ ଅକ୍ଷରେ ପାଳନ କରୁଛି । ଯାହାହେଉ ବୁଢ଼ାଟା ଆସିଲା ଯେ, ଆମର ଅନେକ ସମସ୍ୟା ଦୂର କରିଦେଲା ।'

ଦିନେ ରତ୍ନପ୍ରଭା କୁଡ଼ିଆର ମହିଳା ମାଓବାଦୀମାନଙ୍କୁ ଜଣେଇ ଦେଲା,– 'ମୋର ଦାନ୍ତୁଆଣି ଠାକୁରାଣୀଙ୍କ ପାଖରେ ଗୋଟାଏ ମାନସିକ ଅଛି । ଆଜି ମଉସାଙ୍କ ସାଙ୍ଗରେ ମନ୍ଦିରକୁ ଯାଇ ପୂଜା କରି ଆସିବି' ।

ସନିଆଁ ବୁଢ଼ାକୁ ସମସ୍ତେ ଭଲ କରି ଜାଣି ଗଲେଣି । ବୁଢ଼ାଟା ଭାରି ଭଲ ଲୋକ । ଅତ୍ୟନ୍ତ ବିଶ୍ୱସ୍ତ । ଯେମିତି ସ୍ନେହୀ ସେମିତି କଡ଼ା ମଣିଷ । ଅସଲ ମାଓବାଦୀଙ୍କ ଠାରୁ ସେ ତାଲିମ୍ ପାଇଛି । ଲୋକଙ୍କୁ ସ୍ନେହ ମମତାରେ ବାନ୍ଧି ରଖିବାର କୌଶଳ ବି ଜାଣିଛି । ଏଣେ ଠାକୁର ଠାକୁରାଣୀଙ୍କ ପ୍ରତି ବି ପ୍ରଗାଢ଼ ବିଶ୍ୱାସ । ଅନ୍ୟମାନଙ୍କ ପାଇଁ ସେ ଭାରି ଉପକାରୀ । ସହରୀ ଝିଅଟା ତ ତା'କୁ ଆଦରିଛି । ଯାଉ, ତା ସାଙ୍ଗରେ ଯାଇ ବୁଲି ଆସୁ । ମନଟା ବଦଳିଯିବ । ଦାନ୍ତୁଆଣି ତ ଆମ ସମସ୍ତଙ୍କର ଆରାଧ୍ୟା ଦେବୀ ।

ତା'ପର ଦିନ ବଡ଼ି ସକାଳୁ ସନିଆଁ ସାଙ୍ଗରେ ରତ୍ନପ୍ରଭା ଚାଲିଲା– ଦାନ୍ତୁଆଣି ମନ୍ଦିରକୁ । ଜଙ୍ଗଲୀ ରାସ୍ତାଟା ବହୁତ ଦୂରକୁ ଲମ୍ବି ଯାଇଛି । ହାତରେ ଗଛ ଡାଳକୁ ଆଡ଼େଇ ଆଡ଼େଇ କଣ୍ଟା ଝଟାକୁ ମାଡ଼ି ସେମାନେ ଆଗେଇ

ଚାଲିଛନ୍ତି । ନିରୋଳା ଜାଗା ପାଇ ସେମାନେ ମନଭରି ସବୁ କଥା କୁହାକୁହି ହେଉଥାନ୍ତି । ଓକିଲବାବୁଙ୍କ ଘରେ ରତ୍ନପ୍ରଭାର ବାପା ମାଆ ଆଉ ତା' ସାନ ଭଉଣୀକୁ ଦେଖିଥିବା କଥା ମଧ୍ୟ ସନିଆଁ କହିଦେଲା । ମନୁଆଁ ଏବେ ତାକୁ ଉଦ୍ଧାର କରିବା ଉଦ୍ଦେଶ୍ୟରେ ନିଜେ ମାଓବାଦୀ ହେଇଯାଇଛି ବୋଲି ଓକିଲବାବୁ ଅନୁମାନ କରିଛନ୍ତି । ରତ୍ନପ୍ରଭାର ବାପା ଓକିଲ ପାଖକୁ ଆଉ ଥରେ ଯାଇଥିବେ । କଲେଜର ଅଧ୍ୟକ୍ଷ ଚିଠିଦେଇ ସେ ଦି'ଜଣଙ୍କର ସବୁକଥା କେମିତି ଓକିଲ ବାବୁଙ୍କୁ ଜଣେଇଛନ୍ତି, ସେ ସବୁ କଥା ବି କହିଦେଲା ।

ଏ'ସବୁ କଥା ଶୁଣିସାରି ରତ୍ନପ୍ରଭା ହତବାକ୍ ହେଇ ଯାଇଥିଲା । ତାକୁ ସ୍ୱପ୍ନ ଦେଖିବା ଭଳି ଲାଗୁଥିଲା । ମନୁଆଁ ଘର ତିଆରି ପାଇଁ ଦଶହଜାର ଟଙ୍କା ଚନ୍ଦୁକୁ ଦେଇଯାଇଛି । ଆହୁରି ଟଙ୍କା ପଠେଇବାକୁ କହିଯାଇଛି । ଶୁକୁରୀ ବୁଢ଼ୀ କେମିତି ପୁଅକୁ ଝୁରିଝୁରି ମରିଗଲା । ସେ କେମିତି ଅର୍ଦ୍ଧ ପାଗଳ ହେଇ ମାଓବାଦୀରେ ମିଶିବାକୁ ଜଙ୍ଗଲ ଭିତରକୁ ପଶି ଆସିଲା । ସେ ସବୁ କାହାଣୀ ରତ୍ନପ୍ରଭାକୁ କୌଣସି ଗୋଟିଏ ସିନେମା ଦେଖିଲା ଭଳି ଲାଗୁଥିଲା । ତଥାପି ମଉସାଙ୍କ କଥାରେ ତ କିଛି ଭେଜାଲ ନାହିଁ କିମ୍ବା ସେଥିରେ ମିଛ ସତ ଯୋଡ଼ି ହେଇ ଯିବାର ସମ୍ଭାବନା ବି ନାହିଁ । ତେଣୁ ସେ ମଝିରେ ମଝିରେ ଛେପ ଢୋକି ସନିଆଁ ମୁହଁକୁ ବୋକୀଙ୍କ ଭଳି ଚାହିଁ ରହୁଥାଏ ।

ସେପଟରୁ କେହିଜଣେ ଆସୁଥିବାର ଶବ୍ଦ ଶୁଣାଗଲା । ସନିଆଁ ଭୟରେ ଏଣିକି ତେଣିକି ଚାହିଁଲା । ହାତରେ ତା'ର ଧାରୁଆ ବର୍ଚ୍ଛା । ତଥାପି ତା' ମନକୁ ପାପ ଛୁଇଁଲା । ବଢ଼ିଲା ଝିଅଟା ସାଙ୍ଗରେ ଅଛି । କେହି ବଦମାସ ଯଦି ସାମନା ସାମନି ହେଇଗଲା । ତେବେ ସେ କ'ଣ ବା କରି ପାରିବ ! ଦେହରେ କ'ଣ ସେ ଯୁବା ବୟସର ବଳ ଅଛି ଯେ, ବଣଜନ୍ତୁ ସହିତ ଲଢ଼େଇ କରି ତାକୁ ମାରିଦେବ । ସନିଆଁ ସତର୍କ ହେଇଗଲା । ରତ୍ନପ୍ରଭାର ହାତକୁ ଧରି ପାଖକୁ ଆଉଜେଇ ଆଣିଲା । ବର୍ଚ୍ଛାଟାକୁ ଶକ୍ତ କରି ଧରିଲା । ମନରେ ଅଦମ୍ୟ ସାହସ । ଦରକାର ପଡ଼ିଲେ, ଜୀବନ ଦେଇ ଦେବ ପଛେ, ଶତ୍ରୁକୁ ନ ମାରି ଛାଡ଼ିବ ନାହିଁ ।

ଗଛ ଆଢୁଆଳରୁ ବାହାରି ପଡ଼ିଲେ ଦୁଇଜଣ ମାଓବାଦୀ ଯୁବକ । ସେ ଦୁଇଜଣଙ୍କୁ ଅଟକେଇ ଦେଇ କୁଆଡ଼େ ଯାଉଛ, ସାଙ୍ଗରେ କିଏ କିଏ ଅଛନ୍ତି, କେତେବେଳେ ଫେରିବ ? ସେ ସମସ୍ତ କଥା ବୁଝିନେଇ ବାଟ ଛାଡ଼ିଦେଲେ ।

ପୁଣି ସନିଆଁ ଆରମ୍ଭ କଲା– 'ଆଲୋ ମା ! ତୁ କହୁଥିଲୁ, ମାଓବାଦୀମାନେ ତତେ ଅପହରଣ କରି ଏଠିକି ନେଇ ଆସିଛନ୍ତି । ଏମାନେ ତତେ କେମିତି କେଉଁଠୁ ପାଇଲେ ? ସେ କଥା ମୋତେ ଟିକେ କହିଲୁ' ।

ରତ୍ନପ୍ରଭା କହିଲା– 'ମଉସା ! ମୁଁ ତମକୁ ସବୁ ସତକଥା କହି ଦେଉଛି । କିଛି ଖରାପ ଭାବିବ ନାହିଁ । ଏବେ ତ ତମେ ମୋର ହୃଦୟରେ ଭଗବାନଙ୍କ ସ୍ଥାନ ନେଇ ସାରିଛ । ମୁଁ ଯଦି ମାନସକୁ ବିବାହ କରି ସାରିଥା'ନ୍ତି, ତେବେ ତମେ ମୋର ଦ୍ୱିତୀୟ ପିତା ଅର୍ଥାତ୍ ଶ୍ୱଶୁର ହୋଇ ସାରନ୍ତଣି । ତମକୁ କିଛି ଲୁଚେଇ ମୋର ଲାଭ ନାହିଁ । ସବୁ ସତ ଆଜି ତମରି ଆଗରେ ପ୍ରକାଶ କରୁଛି ।

ମୋର ଆଉ ମାନସର ପଢ଼ା ଶେଷ ହେଇ ଯାଇଥିବାରୁ ଆମ ମନ ବେଶ୍ ହାଲୁକା ହୋଇ ଯାଇଥାଏ । ଆମେ ଦି'ଜଣ ପରସ୍ପରକୁ ପ୍ରାଣଭରି ଭଲ ପାଉ । ଆମର ଫୋନ୍‌ରେ କଥାବାର୍ତ୍ତା ହୁଏ । ସୁବିଧା ନମିଳିଲେ, ଚିଠିପତ୍ର ଦିଆନିଆ ହୁଏ । ଆମଘରେ ମୋ ବାହାଘର ପାଇଁ ବାପା–ମାଆ ଦୁହେଁ ବ୍ୟସ୍ତ ହେଉଥା'ନ୍ତି । ମୁଁ କିନ୍ତୁ ମନସ୍ଥ କରିଥିଲି, ମାନସ ବ୍ୟତୀତ ଆଉ କାହାରିକୁ ବାହା ହେଇ ପାରିବି ନାହିଁ । ମାନସର ସରଳତା, ନିଷ୍କପଟ ହୃଦୟ ଆଉ ଧୀଶକ୍ତି ନିକଟରେ ମୁଁ ବନ୍ଧା ପଡ଼ି ଯାଇଥିଲି ମଉସା । ସେ କିନ୍ତୁ ତା'ର ଘରର ଅବସ୍ଥା, ନିଜ ଜାତିକୁ ନେଇ ନିଜକୁ ନ୍ୟୁନ ମନେ କରୁଥିଲା । ସେଇଥିପାଇଁ ତାକୁ ଏଫିଡ଼େଭିଟ୍ କରି ତା' ସାଙ୍ଗିଆ ମୁଣ୍ଡାରୁ ପଣ୍ଡା କରାଇ ଦେଇଥିଲି । ତାକୁ ଉତ୍ସାହିତ କରିବା ପାଇଁ ବିଭିନ୍ନ ସମୟରେ ତା'ର ପକେଟ ଖର୍ଚ୍ଚ ମୁଁ ଦିଏ । ନିଜ କାର୍‌ରେ ବସେଇ ମୁଁ ତାକୁ ବିଭିନ୍ନ ସ୍ଥାନକୁ ବୁଲେଇ ନିଏ । ଏ' ସବୁ କରିବାର ମୋର ମୂଳ ଉଦ୍ଦେଶ୍ୟ ଥିଲା– ଯେମିତି ହେଲେ ମାନସ ମନରୁ ହୀନମନ୍ୟତା

ଦୂର ହେଇଯାଉ । ମୋ ବାପା ମାଆଙ୍କ ମନ ମୁତାବକ, ପସନ୍ଦଯୋଗ୍ୟ ଜ୍ୱାଇଁ ହେଉ । ତା'ପରେ ଯାଇ ବାହାଘର ହେବ ।

ମାନସ କିନ୍ତୁ ସବୁବେଳେ ପଛଘୁଞ୍ଚା ଦିଏ । ତଥାପି ମୋତେ ସେ କେତେ ଭଲପାଏ, ସେ କଥାକୁ କେବଳ ମୁଁ ଜାଣେ । ସେ ମୋତେ କଥା ଦେଇଥିଲା, 'ଚାକିରି ପାଇବା ପରେ ହିଁ ବାହାଘର କଥା ଚିନ୍ତା କରିବା ।'

ସେଦିନ ପହିଲି ରଜ ଥାଏ । ମୁଁ ଫୋନ୍ କରି ମାନସକୁ ଆମ ଘର ପାଖକୁ ଡକେଇଲି । ମୋର ଇଚ୍ଛା ଥିଲା– ମାନସ ସହିତ ମୋ ବାପାଙ୍କୁ ଗୋଟାଏ ଭଲ ଜାଗାକୁ ନେଇ ଯିବି । ଭଲ ଭାବରେ ଦୁଇଜଣଙ୍କୁ ପରିଚୟ କରେଇ ଦେବି । ଏକଥା ମୁଁ ବାପାଙ୍କୁ କି ମାନସକୁ କହି ନଥିଲି । ତାକୁ ଚମକେଇ ଦେବା ମୋର ମୂଳ ଉଦ୍ଦେଶ୍ୟ ଥିଲା । କିନ୍ତୁ ମାନସ ସେଦିନ ଆସି ପାରିଲା ନାହିଁ । ଗୋଟାଏ ଦାମୀ ମୋବାଇଲ ଫୋନ୍ ମାନସକୁ ଦେବାପାଇଁ କିଣି ଆଣିଥିଲି । ସେଇଥିରେ ଆଗ ଆମ ଦି'ଜଣଙ୍କ ଫଟୋ ମୋ ବାପା ଫଟୋ ଉଠେଇଥା'ନ୍ତେ । ମୋର ମନ ତ ଦୁଃଖ ହେଇଗଲା । ତଥାପି ବାପାଙ୍କ ସାଙ୍ଗରେ ମୁଁ ଚାଲିଲି ସାନ ଘାଗରା । ସବୁ ଯୋଜନା ମୋର ଫସର ଫାଟିଗଲା ।

ସେଦିନ ସାନ ଘାଗରା ଜଳ ପ୍ରପାତର ଦୃଶ୍ୟ ମୋତେ ବିଭୋର କରି ଦେଇଥିଲା । ବାପା କହିଲେ, 'ସାନ ଘାଗରା ପରେ ବଡ଼ ଘାଗରାର ଡ୍ୟାମ୍ ଦେଖିବାକୁ ଯିବା । ସେଠିକାର ସୁନ୍ଦର ପରିବେଶ ଏହାଠାରୁ ଆହୁରି ଭଲ । କେନ୍ଦୁଝର ଜିଲ୍ଲା ହେଉଛି, ପ୍ରକୃତିର ଶୋଭାର ଭଣ୍ଡାର । ଏଇ ଦେଖୁନୁ– ପାହାଡ଼ ଉପରୁ କେନ୍ଦୁଝର ସହର କେମିତି ଦେଖାଯାଉଛି । ସତରେ କେନ୍ଦୁଝରର ପ୍ରତ୍ୟେକ ସ୍ଥାନ ଦର୍ଶନୀୟ । ତୁ ହାଣ୍ଡିଭଙ୍ଗା ଯାଇଛୁ ? ଓଃ ! କି ସୁନ୍ଦର । ଭୀମକୁଣ୍ଡ କଥା ତ କଥାରେ କହି ହେବନାହିଁ । ବିଭିନ୍ନ ସ୍ଥାନରୁ ଲୋକେ ସେଠିକି ଆସନ୍ତି । ଭାରି ମଜା ହୁଏ ।'

ମୁଁ ଭାବୁଥିଲି ବାପା ମାଆ ସାଙ୍ଗରେ ଏଥର ମୁଁ ସେ ଦର୍ଶନୀୟ ସ୍ଥାନକୁ ବୁଲି ଦେଖିସାରେ । ଆମର ବାହାଘର ସରିଗଲେ ମୁଁ ଗାଡ଼ି ଚଲେଇ ମାନସକୁ ନେଇ ସେ ଜାଗାସବୁ ବୁଲେଇ ଆଣିବି ।

ବାପା ମୋ ମୁହଁକୁ ଦେଖି ଚହିଁ ଜାଣି ପାରିଲେ ଯେ, ମୁଁ ଅନ୍ୟମନସ୍କ ହେଇ ଯାଇଛି । ନ ଜାଣିଲା ପରି ବାପା କହିଲେ– 'ଚାଲ ଏଥର ପ୍ରପାତ ପାଖକୁ ଯିବା । ସେଇଠି କେମିତି ପାଣି କଚାଡ଼ି ହେଇ ପଡୁଛି, ତାକୁ ଦେଖିବା । କିନ୍ତୁ ପଥର ଗୁଡ଼ାକ ଭାରି ଖସଡ଼ା ହେଇଛି । ସାବଧାନ ହେଇକି ଯିବାକୁ ପଡ଼ିବ' ।

ବାପାଙ୍କୁ ଆଶ୍ଚର୍ଯ୍ୟ କରିଦେବା ଉଦ୍ଦେଶ୍ୟରେ ମୁଁ ଲମ୍ବା ଲମ୍ବା ପାଦ ପକେଇ ପ୍ରପାତ ପାଖକୁ ଚାଲିଗଲି । ବଡ଼ ପଥର ଉପରେ ଠିଆହେଇ ତଳକୁ ଡେଇଁ ପଡ଼ିବି ବୋଲି ତାଙ୍କୁ ମଜାରେ କହିଲି ।

ବାପା ଠୋ–ଠୋ ହେଇ ହସୁଥିଲେ । କହିଲେ, 'ତୁ କ'ଣ ଏବେ ନର୍ସରୀ ପିଲା ହେଉଛୁ ଯେ, ମୋତେ ଡରଉଛୁ । ଏବେ ତ ତୁ ପିଜି କରି ସାରିଲୁଣି । ଏବେ ବି ତୋ'ର ପିଲାଳିଆମୀ ଛାଡ଼ିନାହିଁ । ହଉ, ମୁଁ ଏଇଠି ବସିଛି । ତୁ ଯା– ବୁଲାବୁଲି କରି ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଉପଭୋଗ କର' ।

ଗୋଟାଏ ପଥରରୁ ଆଉ ଗୋଟାଏ ପଥରକୁ ଡେଇଁ ଡେଇଁ ମୁଁ ପ୍ରପାତ ସେପଟକୁ ଚାଲି ଯାଇଥିଲି । ବାପାଙ୍କ ଠାରୁ ବେଶ୍ କିଛି ଦୂରରେ ଠିଆହେଇ ପ୍ରପାତ କଡ଼ ପଥର ଖୋଲରେ ଛୋଟ ଛୋଟ ମାଛକୁ ଧରିବାକୁ ମୁଁ ନଇଁ ପଡ଼ିଥାଏ, ହଠାତ୍ କିଏ ଜଣେ ଆସି ପଛରୁ ମୋ ଆଖି ଆଉ ପାଟିକୁ ଚାପି ଧରିଲା । ମୁଁ ଯେତେ ଚେଷ୍ଟା କଲେ ବି ସେ ରାକ୍ଷୁଆ ହାତକୁ ମୋ ମୁହଁରୁ କାଢ଼ି ପାରିଲି ନାହିଁ । ଦୁଇଜଣ ଯୁବକ ମୋତେ ଶୂନ୍ୟେ ଶୂନ୍ୟେ ଟେକି ନେଇଗଲେ ରାସ୍ତା ଉପରେ ଥିବା ତାଙ୍କ ଜିପ୍ ଭିତରକୁ ।

ମୋତେ କିଏ ନେଇ ଯାଉଛି, ଏକଥା ବାପା ଜାଣିଲା ବେଳକୁ ବହୁତ ଡେରି ହେଇ ଯାଇଥିଲା । ସେ ଜୀବନକୁ ପାଣି ଛଡ଼େଇ ଦୌଡ଼ି ଆସିଲେ ଜିପ୍ ପାଖକୁ । କିନ୍ତୁ ଦ୍ରୁତ ଗତିରେ ଜିପ୍‌ଟା ସମ୍ବଲପୁର ଆଡ଼କୁ ଚାଲିଲା । ଗାଡ଼ି ପଛେପଛେ ଗୁଡ଼ାଏ ବାଟ ବାପା ଦୌଡ଼ି ଦୌଡ଼ି ଆସୁଥିଲେ । ଶେଷରେ ସେ କଚାଡ଼ି ହେଇ ପଡ଼ିଗଲେ । ମୋତେ ଉଦ୍ଧାର କରିବାର ସକଳ ଚେଷ୍ଟା ତାଙ୍କର ବିଫଳ ହେଲା । ଦୁଇଜଣ ଯୁବକ ଆଗରୁ ସେ ଗାଡ଼ିରେ ଥିଲେ । ସେମାନେ

ମୋ ମୁହଁକୁ ବାନ୍ଧି ପକେଇ ଚୁପ୍ ରହିବାକୁ ନିର୍ଦ୍ଦେଶ ଦେଲେ । ଗୋଟାଏ ପିସ୍ତଲ ଓ ଗୋଟାଏ ଛୁରୀ ମୋ ଆଖି ଆଗରେ ଦେଖେଇ ରଖିଲେ । ମୁଁ ବୁଝିଗଲି, କୌଣସି ଡକାୟତ ଦଳ କିମ୍ବା ମାଓବାଦୀ ଦଳ ମୋତେ ଅପହରଣ କରି ନେଇ ଯାଉଛନ୍ତି । ମୁଁ ଉପାୟ ଖୋଜୁଥାଏ, କେମିତି ସୁଯୋଗ ପାଇଲେ, ଗାଡ଼ିରୁ ଡେଇଁ ପଡ଼ିବି, ଜୀବନ ଗଲେ ପଛେ ଯାଉ । କିନ୍ତୁ ସକଳ ଚେଷ୍ଟା ମୋର ବିଫଳହେଲା । ମୋର କ'ଣ ହେବ, ମୁଁ କୁଆଡ଼େ ଯିବି, ସେ ଚିନ୍ତା ଅପେକ୍ଷା ମୋର ଅଧିକ ଚିନ୍ତା ହେଲା –ମୋ ବାପାଙ୍କର କ'ଣ ହେଇଥିବ ? ବିଭିନ୍ନ ଆଶଙ୍କା କରି ମୋ ଆଖି ଆଗରେ ନାଚିଗଲା । ପିଚୁ ରାସ୍ତା ଉପରେ ପଡ଼ି ମୋ ବାପା ଛଟପଟ ହେଉଛନ୍ତି । ପାଣି ପାଣି ଚିତ୍କାର କରି ତାଙ୍କ ଜୀବନ ଛାଡ଼ି ଯାଉଛି । ଏ'ସବୁ କାଳ୍ପନିକ ଚିତ୍ର ଦେଖି କେତେବେଳେ ମୋର ଚେତା ବୁଡ଼ିଗଲା, ମୁଁ ଜାଣି ପାରିଲି ନାହିଁ ।

ଆଖି ଖୋଲି ଦେଖିଲି– ଘନ ଜଙ୍ଗଲ ଭିତରେ ଥିବା ଗୋଟାଏ ଛୋଟ କୁଡ଼ିଆ ଭିତରେ ମୁଁ ଖଣ୍ଡେ ମଇଳା ସପ ଉପରେ ଶୋଇଛି । ଜଣେ ମହିଳା



ମାଓବାଦୀ ମୋ ମୁଣ୍ଡରେ ଓଦା କନା ଦେଇ ପୋଛୁଛି । ମୋର ଚେତା ଆସିବା ଦେଖି ସେ ମୋତେ କହିଲା, 'ମୁଁ ଅଛି ତୋ' ପାଖରେ । ଚାରିଆଡ଼କୁ ଦେଖ, ଏଠି ଆଉ କେହି ନାହାନ୍ତି । ତୋ' ଜୀବନ ଉପରେ କିଛି ବିପଦ ନାହିଁ । ତୁ ନିର୍ଭୟରେ ମୋ ପାଖରେ ରହିବୁ ।'

ସେ ମହିଳାର କଥା ଶୁଣିଲି ସତ, କିନ୍ତୁ ମୋ ଉପରେ ତା'ର ପ୍ରଭାବ ସାମାନ୍ୟ ମାତ୍ର ପଡ଼ି ନଥିଲା । ପୁଣି ବାପା ରାସ୍ତାରେ ପଡ଼ି ଯାଉଥିବାର ଦୃଶ୍ୟ ମୋତେ ଦେଖାଗଲା । ଭୟରେ ମୋ ଦେହ ବରଡ଼ା ପତ୍ର ଭଳି ଥରିବାକୁ ଲାଗିଲା । ବ୍ୟାକୁଳ ହେଇ ସେ ମହିଳାକୁ ପଚାରିଲି– 'ମୁଁ ଏବେ କେଉଁଠି ଅଛି ? ମୋତେ ଏଠିକି କାହିଁକି ଅଣା ହେଇଛି, ମୋତେ ଦୟାକରି କୁହ ।'

ମହିଳା ମାଓବାଦୀ ଜଣକ ନରମ ଗଳାରେ କହିଲା– 'ତୋର ମୋଟେ ବ୍ୟସ୍ତ ହେବା ଦରକାର ନାହିଁ । ତୋତେ ଧରି ଆଣିବାର ଉଦ୍ଦେଶ୍ୟ ଆମର ଅଲଗା । ତୋତେ କିଛି ଦିନ ଏଇଠି ରହିବାକୁ ପଡ଼ିବ । ତା'ପରେ ମୁଁ ନିଜେ ତୋତେ ନେଇ କେନ୍ଦୁଝରରେ ତୋ' ବାପାଙ୍କ ପାଖରେ ଛାଡ଼ିଦେଇ ଆସିବି ।'

ସନିଆଁ ଏସବୁ ଘଟଣାର ବିବରଣୀ ଶୁଣି ଏକପ୍ରକାର ମୂକ ପାଲଟି ଯାଇଥିଲା । ତାକୁ ଲାଗୁଥିଲା– ସତେ ଯେପରି ସେ ଏ'ସବୁ ଘଟଣା ଦୁର୍ଘଟଣାକୁ ନିଜ ଆଖିରେ ଦେଖି ପାରୁଛି ।

–ତା' ପାଟିରୁ ବାହାରି ପଡ଼ିଲା, 'ତୁ ପଚାରିଲୁ ନାହିଁ, ତତେ ଧରି ନେଇ ଆସିବାର ପ୍ରକୃତ ଉଦ୍ଦେଶ୍ୟ କ'ଣ ?'

–ପଚାରିଥିଲି । ସେ କଥାଟାକୁ ଖାଲି ଗୋଳେଇ ଘାଣ୍ଟି ଗୁଡ଼ାଏ ଏଣୁତେଣୁ କଥା କହିଲା । ମୁଁ ଜାଣିଥିଲି, ଏ' ମହିଳା ଜଣକ ସାଧାରଣ ମାଓବାଦୀ ନୁହେଁ । ବହୁତ କଥା ଜାଣିଛି । ମୋତେ କିଛି କହିବାକୁ ଚାହୁଁନାହିଁ । ମିଛରେ ମୋତେ ଭଲ ପାଇବାର ଛଳନା କରୁଛି । ତେଣୁ ମୁଁ ସ୍ଥିର କରିନେଲି, ଏମାନେ ମୋତେ ଜୀବନରୁ ମାରି ଦିଅନ୍ତୁ ପଛକେ, ଏଠାରୁ ଅନ୍ନଜଳ ସ୍ପର୍ଶ କରିବି ନାହିଁ । ଆମରଣ ଅନଶନ କରିବି ।

ତାହା ହିଁ କଲି । ଯିଏ ଯେତେ ପ୍ରକାର ଚେଷ୍ଟା କଲେ ବି ମୋତେ କେହି ଖୋଇ ପାରିଲେ ନାହିଁ । ଶେଷରେ ମାଓବାଦୀଙ୍କ ଭିତରୁ ଜଣେ ନେତା ଆସି ମୋତେ କହିଲେ, 'ଦେଖ ମା ! ତୁ ଆମର ଝିଅ ବୟସର । ତୋତେ ଆମେ ଧରି ଆଣିଛୁ, ମାନସକୁ ମନେଇବା ପାଇଁ । ସେ ଯଦି ଆମ ମାଓବାଦୀ ସଂଗଠନରେ ସାମିଲ ହୋଇଯିବ, ଆମେ ତାକୁ ଗୋଟାଏ ବଡ଼ ଦାୟିତ୍ୱ ଦେବୁ । ଆମର ଗୁପ୍ତଚର ସୂଚନା ଦେଇଛି, ମାନସ ହେଉଛି, ଜଣେ ବୁଦ୍ଧିମାନ ଆଉ ଦକ୍ଷ ଆଦିବାସୀ ଯୁବକ । ସେ ଆମ ସାଙ୍ଗରେ ଥିଲେ, ବହୁତ ଗୁଡ଼ାଏ ହେଇ ପାରି ନଥିବା କାମ ହେଇ ପାରିବ । ସେ ଏଠିକି ନ ଆସିବା ଯାଏ, ତୋତେ ଆମେ ଛାଡ଼ି ପାରିବୁ ନାହିଁ । ଆମେ ଜାଣୁ ତୁ ତାକୁ ଭଲ ପାଉ, କେବଳ ତୋ' କଥାକୁ ମାନି ସେ ମାଓବାଦୀରେ ସାମିଲ ହୋଇ ପାରିବ ।'

ଏତେବେଳକୁ ମୁଁ ଏମାନଙ୍କର ମୂଳ ଉଦ୍ଦେଶ୍ୟ ବୁଝିପାରିଲି । ହଁ, ମଉସା, ଥରେ ମାନସ ମୋତେ କହୁଥିଲା– ମାଓବାଦୀମାନେ ଯାଇ ତାକୁ ଅନେକ ଥର ଦେଖା କରିଥିଲେ । ତାଙ୍କ ସହିତ ମିଶିଯିବାକୁ ଅନୁରୋଧ ବି କରିଥିଲେ । ତାଙ୍କ ଅଂଚଳର ଉନ୍ନତି ପାଇଁ ତାକୁ ମାଓବାଦୀ ହେବା ନିହାତି ଦରକାର ବୋଲି ଯୁକ୍ତି ଦେଖେଇ ଥିଲେ । କିନ୍ତୁ ସମସ୍ତ ପ୍ରକାର ପ୍ରଲୋଭନକୁ ଏଡ଼େଇ ଦେଇ ସେ ମନା କରି ଦେଇଥିଲା । ତଥାପି ସେମାନେ କଳେ ବଳେ କୌଶଳେ ମାନସକୁ ମାଓବାଦୀରେ ସାମିଲ କରିବାକୁ ଚେଷ୍ଟା କରୁଥିଲେ । ଆମେ ଦି'ଜଣ ସେଦିନ ସାନ ଘାଗରା ବୁଲି ଯିବାକୁ ଯୋଜନା କରୁଥିଲୁ । ଜଣେ ଅଚିହ୍ନା ଯୁବକ ସେକଥାକୁ ଦୂରରୁ ଥାଇ ଶୁଣୁଥିଲା । ସେ ନିଶ୍ଚୟ ଜଣେ ମାଓବାଦୀର ଗୁପ୍ତଚର ହେଇଥିବ । ସେମାନେ ବୋଧହୁଏ– ସେହିଦିନ ହିଁ ମାନସକୁ ଅପହରଣ କରିନେବାର ଯୋଜନା କରିଥିଲେ । କିନ୍ତୁ ମାନସର ଭାଗ୍ୟ ଭଲ । କୌଣସି କାରଣରୁ ସେ ଆମ ସାଙ୍ଗରେ ଆସି ପାରି ନଥିଲା । ନହେଲେ ମାନସର ଅବସ୍ଥା କ'ଣ ହେଇଥା'ନ୍ତା ! ତା' ସଙ୍ଗେ ମୋର ଅବସ୍ଥା କ'ଣ ହେଇଥା'ନ୍ତା । ମୁଁ କଳ୍ପନା କରି ପାରୁନାହିଁ ।

ରତ୍ନପ୍ରଭାର କଥା ମଝିରେ ସନିଆଁ କହିଲା– 'ଆଉ କ'ଣ ବାକି ଅଛି ଯେ, ସେଇଟା ହେଇ ଯାଇଥା'ନ୍ତା । ସେମିତି ହେଇଥିଲେ କେବଳ ମାନସ ମାଓବାଦୀଙ୍କ କବଳରେ ଥାଆନ୍ତା । ଏବେ ତ ଆମେ ତିନିଜଣ ଏକା ଦଶା ଭୋଗୁଛେ । ହଉ ମା' ଯାହା ତ ହବାର ହବ । ଦେଖାଯାଉ ଭଗବାନଙ୍କ ଇଚ୍ଛା କ'ଣ । ହେଇ ଦେଖ, ଆମେ କଥା ହେଇ ଆସୁ ଆସୁ ରାସ୍ତା ସରି ଆସିଲାଣି । ଏତେ ବାଟ କିଛି ଜଣା ପଡ଼ିଲା ନାହିଁ ।  ଯା' ଠାକୁରାଣୀଙ୍କ ମନ୍ଦିର ଭିତରେ ପଶି ତୋ' ମନର କଥା ଖୋଲି କହିଦେ । ସେ ତୋ' ଗୁହାରିକୁ ନିଶ୍ଚୟ ଶୁଣିବେ ।'

ରତ୍ନପ୍ରଭା ଦେହରୁ ଓଢ଼ଣୀ ଟେକି ମୁଣ୍ଡ ଉପରେ ରଖିଲା । ଆଣ୍ଠେଇ ପଡ଼ି ମାଆଙ୍କ ଆଗରେ ମୁଣ୍ଡପିଟି କହିଲା– ମା' ! ମାନସକୁ ଭଲରେ ରଖିଥା । ମୋର ଆୟୂଷ ନେଇ ତାକୁ ଦେ । ଭୋଗ ତ କିଛି ଆଣିନାହିଁ । ମୋ ଆଖି ଲୁହରେ ତୋ' ପାଦ ଧୋଇ ହେଇଯାଉ । ମୋ ବାପା–ମାଆଙ୍କ ମନରେ ସାହସ ଦେଇଥିବୁ ମା । ଧୈର୍ଯ୍ୟ ଦେଇଥିବୁ । ମୋ ପାଇଁ କିଛି ମାଗି ପାରୁନାହିଁ । ସନ୍ତାନମାନଙ୍କୁ ରକ୍ଷା କରିବା ତ ତୋ'ର କାମ । ମୁଁ କାହିଁକି କ'ଣ ମାଗିବି ?

ସନିଆଁ ମା' ଦାନ୍ତୁଆଣିଙ୍କ ଆଖି ଦୁଇଟାକୁ ଚାହିଁ ହାତଯୋଡ଼ି ଠିଆ ହେଇଛି । ଲକ୍ଷ୍ୟ କଲା, ତାଙ୍କ ମୁଣ୍ଡ ଉପରୁ ଫୁଲଟିଏ ଖସି ପଡ଼ିଲା । ମାଆଙ୍କର ଆଖିରୁ ଜ୍ୟୋତି ପ୍ରକାଶ ପାଇଲା ପରି ଲାଗିଲା ।

ରତ୍ନପ୍ରଭା ଏବଂ ସନିଆଁ ତରବର ହେଇ ଯେଉଁବାଟ ଦେଇ ଆସିଥିଲେ, ସେଇବାଟେ ଫେରିଲେ । କିଛିବାଟ ଯାଇଛନ୍ତି, ପୁଣି ଜଣେ ବଂଧୁକଧାରୀ ମାଓବାଦୀ ଯୁବକ ସହିତ ତାଙ୍କର ଭେଟ ହେଇଗଲା । ପ୍ରଥମେ ସେମାନେ ତାକୁ ଦେଖି ଚମକି ପଡ଼ିଥିଲେ । କିନ୍ତୁ ଯୁବକଜଣକ ଆଗତୁରା ସନିଆଁକୁ ଚିହ୍ନିପାରି କହିଲା– 'ମଉସା ! କ'ଣ ମାଆଙ୍କ ମନ୍ଦିରକୁ ଯାଇଥିଲ ? ଏବେ କେମିତି ଅଛ ? ତମର କାମ ଦେଖି ଆମ ସର୍ଦ୍ଦାର ବହୁତ ଖୁସି ହେଇଛନ୍ତି ।'

ସନିଆଁ ଚିହ୍ନିଲା– ଯୁବକଟି ହେଉଛି ସେହି ମହେନ୍ଦ୍ର । ଯିଏ ତାକୁ ସେଦିନ ଆଣି ଏଇ ଶିବିରରେ ଛାଡ଼ି ଯାଇଥିଲା ।

ମହେନ୍ଦ୍ରକୁ ଚିହ୍ନିପାରି ସନିଆଁ ମନଟା ଟିକେ ହାଲୁକା ହେଇଗଲା । ପରସ୍ପରର ଦୁଃଖ ପରସ୍ପର ଜାଣନ୍ତି । କେବଳ ରତ୍ନପ୍ରଭା ହିଁ ତୃତୀୟ ବ୍ୟକ୍ତି । ତାକୁ ଚିହ୍ନେଇ ଦେବା ନିହାତି ଭଦ୍ରାମୀ ମନେକରି ସନିଆଁ କହିଲା, 'ଆରେ ମହେନ୍ଦ୍ର ! ମୁଁ ତତେ ମନେ ମନେ ଖୋଜୁଥିଲି । ହଁ ଶୁଣ– ଏ' ଝିଅଟି ନୂଆକରି ଶିବିରକୁ ଆସିଛି । ମୁଁ ତା'ର ବାପ ହେଇ ସେଇଠି ସେବା କରୁଛି । ତୁ ତ ମୋର ଧରମ ପୁଅ ହେଇ ସାରିଛୁ । ଏଇଠି ମୋତେ ପୁଅ ଝିଅ ଦି'ଜଣ ମିଳିଗଲେ । ତମେ ଦି'ଜଣଙ୍କ ମନର କଥା ତ ମତେ ଜଣା । ଆଉ କ'ଣ କାହାକୁ ପଚାରିବି ?'

ମହେନ୍ଦ୍ର କହିଲା, 'ମଉସା ! ଏଠି ମାଛି ପଡ଼ିଲେ ନବଖଣ୍ଡ । ସାବଧାନ, ବେଶି କଥାବାର୍ତ୍ତା କରନାହିଁ । ଆମକୁ ଘରକଥା, ସୁଖ ଦୁଃଖର କଥା ଏଠି ଆଲୋଚନା କରିବା ମନା । ମୁଁ ଶୁଣୁଛି, ସରକାର କ'ଣ ଗୋଟାଏ କମିଂ



ଅପରେସନ୍ କରିବେ । କିଏ କେଉଁଠି କେମିତି ମରିବ, ତା'ର ହିସାବ ମିଳିବ ନାହିଁ । ଏସ୍.ଓ.ଜି ଓ ସି.ଆର.ପି.ଏଫ୍ ଏଥିପାଇଁ ଆସି କେନ୍ଦୁଝରରେ ଜମା ହେଲେଣି । କେତେବେଳେ ଆମକୁ ଶିବିର ଛାଡ଼ି ଜଙ୍ଗଲ ଭିତରକୁ ଚାଲି ଯିବାକୁ କୁହାଯିବ । ତେଣୁ ସାବଧାନ ଥିବ । ଏ' ଝିଅଟା ତ ନୂଆ । ତାକୁ ବାଟଘାଟ କିଛି ଜଣା ନାହିଁ । ତମେ ତା'ର ସୁରକ୍ଷା ବ୍ୟବସ୍ଥା କରିବ ।'

ଏତେବେଳଯାଏ ସନିଆଁ ଆଉ ମହେନ୍ଦ୍ରଙ୍କର କଥାବାର୍ତ୍ତା ଶୁଣୁଥିଲା- ରତ୍ନପ୍ରଭା । ସେ ଜାଣି ପାରିଲା, ମାଓବାଦୀଙ୍କ ଭିତରେ ଭଲ ମଣିଷ ବି ଅଛନ୍ତି । ସେମାନଙ୍କ ଭିତରେ ପୁଣି ମଣିଷ ପଣିଆ ବି ଅଛି । ତେଣୁ ମହେନ୍ଦ୍ର ବିଷୟରେ ଅଧିକ ଜାଣିବା ପାଇଁ ତା'ର ଇଚ୍ଛା ହେଲା । ସେ ପଚାରିଦେଲା, 'ମହେନ୍ଦ୍ର ବାବୁ ! ଆପଣଙ୍କ ପୂରା ନାଆଁଟା କ'ଣ ?

-'ମୋ ନାଆଁ ମହେନ୍ଦ୍ର ଲାଗୁନ୍ । ଘର ତ ଏଇ ପାଖ ଜଙ୍ଗଲ ଭିତରେ ଥିବା ଛୋଟିଆ ଗାଆଁରେ । ଆମ ଗାଆଁର ଆହୁରି ୧୦/୧୨ ଜଣ ପିଲା ଏଇ ଶିବିରର ବିଭିନ୍ନ ଜାଗାରେ ଅଛନ୍ତି ।'

କଥା ମଝିରେ ସନିଆଁ ପଚାରିଲା- 'ଏବେ ଯାଉଛୁ କୁଆଡ଼େ ?'

-'ମୋର ଜଣେ ସାଙ୍ଗ ମଧୁ ଲାକ୍ରା, ସେ ଗୁପ୍ତଚର କାମ କରେ । ସେ କହୁଥିଲା- 'ମାନସ ବୋଲି ଗୋଟାଏ ଟୋକା ଏବେ ନୂଆକରି ମାଓବାଦୀରେ ସାମିଲ ହୋଇଛି । ସେ ଏଇବାଟ ଦେଇ ଆସିବ । ପୁରୁଷ ପ୍ରଶିକ୍ଷଣ ଶିବିରକୁ ମୁଁ ତାକୁ ବାଟ କଢ଼େଇ ନେଇଯିବାକୁ ଏଇଠି ଅପେକ୍ଷା କରିଛି ।' ମହେନ୍ଦ୍ର କହିଲା ।

ମହେନ୍ଦ୍ର କଥା ଶୁଣି ସନିଆଁ ସହିତ ରତ୍ନପ୍ରଭା ଚମକି ପଡ଼ିଲ । ଦୁହେଁ ଦୁହିଁଙ୍କୁ ତଟସ୍ଥ ହେଇ ଚାହିଁଲେ । କାହାରି ପାଟିରୁ ହୁଁ କି ଚୁଁ ଶବ୍ଦଟିଏ ବାହାରିଲା ନାହିଁ । ରତ୍ନପ୍ରଭା ପେଟରେ ହାବୁକାଏ ପବନ ପଶିଗଲା ପରି ଲାଗିଲା । ନିଜକୁ ସଂଯତ କରି ସେ ସନିଆଁକୁ ଚାହିଁ କହିଲା- 'ମଉସା ! ଚାଲ ଆମେ ଶୀଘ୍ର ଏଠୁ ଚାଲିଯିବା । ମୋତେ ଭାରି ଡର ମାଡୁଛି ।'

ସନିଆଁ ଆଶ୍ଚର୍ଯ୍ୟ ହେଇ ଭାବିଲା– 'ମନୁଆଁ ଏଇ ବାଟଦେଇ ଶିବିର ଭିତରକୁ ଯିବ । ତାକୁ ଦେଖିବାକୁ ଅପେକ୍ଷା ନ କରି ଏ'ଝିଅଟା ଏମିତି କ'ଣ କହୁଛି ? ତଥାପି ସେ ଜାଣେ, ମୋ' ଅପେକ୍ଷା ଝିଅଟା ମନୁଆଁକୁ ବେଶି ଭଲପାଏ । ସେ ତ ତାକୁ ତା'ର ଜୀବନ ବୋଲି ଧରି ନେଇଛି । ସିଏ ତ ମୋ ଭଳି ମୂର୍ଖ ନୁହଁ । ବୁଦ୍ଧିରେ ସେ ମୋଠାରୁ କେତେ ବଡ଼ । ସେ ନିଶ୍ଚୟ କିଛି ଚିନ୍ତାକରି କହିଥିବ । ନିଜ ମନକୁ ସାନ୍ତ୍ୱନା ଦେଇ ସନିଆଁ ରତ୍ନପ୍ରଭା ସହିତ ତରବର ହେଇ ସେ ଜାଗା ଛାଡ଼ି ଚାଲି ଆସିଲା । ମଝିରେ ମଝିରେ ସେ ପଛକୁ ଚାହୁଁଥାଏ । ମହେନ୍ଦ୍ର ପୂର୍ବପରି ସେଇଠି ଠିଆହେଇ ଅପେକ୍ଷା କରିଥାଏ । ଚାହୁଁ ଚାହୁଁ ଜଙ୍ଗଲର ସରୁରାସ୍ତା ମୋଡ଼ରେ ମହେନ୍ଦ୍ର ଅଦୃଶ୍ୟ ହେଇଗଲା ।

ସନିଆଁ ପଚାରିଲା, 'ମାଆ ! ମହେନ୍ଦ୍ର କହିଲା– ଏଇବାଟ ଦେଇ ମାନସ ଆସିବ । ତୁ ତ କାହିଁ ଅଟକି ଯିବାକୁ ଚାହିଁଲୁ ନାହିଁ ? ତାକୁ ଦେଖିବାକୁ କ'ଣ ତୋ'ର ଇଚ୍ଛା ହେଲାନାହିଁ ନା ଆଉ କିଛି କାରଣ ଅଛି' ?

ରତ୍ନପ୍ରଭା କହିଲା, 'ମଉସା ! ବର୍ତ୍ତମାନ ପରିସ୍ଥିତିରେ ଏଠି ଆମେ କାହାରିକୁ ବିଶ୍ୱାସ କରିବା ଉଚିତ୍ ନୁହେଁ । ପରିସ୍ଥିତିକୁ ଦୃଷ୍ଟିରେ ରଖି ଆମକୁ କାମ କରିବାକୁ ହେବ । ସତରେ ଯଦି ମାନସ ଆସୁଥିବ, ତେବେ ତ ମା' ଦାନ୍ତୁଆଣି ମୋ ଡାକ ଶୁଣିଲେ ବୋଲି ଜାଣିବି । ମୋ ପୂର୍ବଜନ୍ମର ସତ୍‌କର୍ମର ଫଳ ମୋତେ ମିଳିଗଲା ବୋଲି ଜାଣିବି । ତା' ସଙ୍ଗେ ସଙ୍ଗେ ତମ ଭଳି ବାପାଙ୍କର ଆଶୀର୍ବାଦ ନିଶ୍ଚୟ କାମ କରୁଛି ବୋଲି ଜାଣିବି । ଚାଲ ଏବେ ଆମେ ଶିବିରକୁ ଚାଲିଯିବା । ବେଶି ବିଳମ୍ବ କରିବା ଉଚିତ୍ ନୁହେଁ ।'

ରତ୍ନପ୍ରଭା ସନିଆଁ ସହିତ ଲମ୍ବା ପାଦ ପକେଇ ଶିବିର ଭିତରକୁ ପଶିଗଲା ।



# ବାର

ଶିବିର ଭିତରେ ଥାଇ ସନିଆଁର ମନ ବଡ଼ ବ୍ୟାକୁଳ ହେଉଥିଲା । ମନୁଆଁର ମୁହଁଟାକୁ ଟିକେ ଦୂରରୁ ଦେଖି ଦେଇଥିଲେ ବି ଭଲ ଲାଗିଥା'ନ୍ତା । ଠିକ୍ ସେହିପରି ରତ୍ନପ୍ରଭା ଭାବୁଥିଲା, 'ମାନସ ଏବେ କେମିତି ଅବସ୍ଥାରେ ଥିବ ? ତା'ର ହିରୋପରି ଚେହେରାଟା ନିଶ୍ଚୟ କଳା ପଡ଼ି ଯାଇଥିବ । ଯିଏ ଦିନେ ମୋତେ ନ ଦେଖିଲେ ପାଗଳ ହେଇଯାଏ, ସେ ମୋତେ ଝୁରିଝୁରି କଣ୍ଟା ହେଇ ଯାଇଥିବ । ମଉସାଙ୍କର ମନର କଥାକୁ ମୁଁ ତ ବୁଝି ପାରିଥିଲି, କିନ୍ତୁ....... । ଛାଡ଼ ଯାହା ହେବାର ତ ହେଇ ଗଲାଣି । ମା' ଦାନ୍ତୁଆଣିଙ୍କର ଇଚ୍ଛାରେ ଯାହା ହେବ, ତାହା ଆମ ପାଇଁ ନିଶ୍ଚୟ ଭଲ ହେବ । ଏଇତ ମାଆଙ୍କୁ ଦର୍ଶନ କରି ଦୁଃଖ ଜଣାଇ ଫେରୁ ଫେରୁ ଶୁଭ ଖବରଟାଏ ଆମକୁ ମିଳିଗଲା । ଯାହା ଆମର କଳ୍ପନାର ବାହାରେ ଥିଲା, ତାହା ହେଇଗଲା । ମାନସ ନିଶ୍ଚୟ ଆମ ଶିବିର ପାଖାପାଖିରେ ରହିବ । ଆଜି ନହେଲେ ବି କାଲିକୁ ତ ଦେଖା ହେଇଯିବ' ।

ରତ୍ନପ୍ରଭା ଦୁଇହାତ ଯୋଡ଼ି ମା' ଦାନ୍ତୁଆଣିଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇଲା । ସେପଟେ ସନିଆଁ ତଳକୁ ମୁଣ୍ଡପୋତି କୁଡ଼ିଆ କୋଣରେ ବସିଥାଏ । ମୁହଁଟା ଶୁଖି କଳା କାଠ ପଡ଼ି ଯାଇଥିଲା । ରତ୍ନପ୍ରଭା ତା' ମୁହଁକୁ ଚାହିଁ, ଭାବୁଥିଲା– ସତରେ କେଡ଼େ ନିରୀହ ଆଉ ସରଳ ମଣିଷ ଏହି ସନିଆଁ ମଉସା । ଅନିଚ୍ଛା ସତ୍ତ୍ୱେ ଆମପାଇଁ ମାଓବାଦୀ ହେଇ ଜଙ୍ଗଲରେ ରହିଛନ୍ତି । ଭଗବାନ କାହିଁକି ତାଙ୍କୁ ଏ' ଦଣ୍ଡ ଦେଲେ ? ଏଇଟା ବୋଧହୁଏ ତାଙ୍କପାଇଁ ଭଗବାନଙ୍କର ଗୋଟାଏ ପରୀକ୍ଷାର ବେଳ । ମୋ ମନ କହୁଛି ସେ ନିଶ୍ଚୟ ଏ' ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବେ ।

ହଠାତ୍ ବାହାରେ କିଛି ଗୋଟାଏ ଭୟଙ୍କର ଶବ୍ଦ ଶୁଣାଯିବାରୁ ଦୁଇଜଣଙ୍କର ଭାବନାର ଖିଅ ଛିଡ଼ିଗଲା । ସନିଆଁ ଠିଆ ହେଇପଡ଼ି ସାବଧାନ ହେଇଗଲା । ରତ୍ନପ୍ରଭା ଚମକି ପଡ଼ି ଏଣିକି ତେଣିକି ଚାହିଁଲା । ସେ ଠିକ୍ ଜାଣି ପାରିଲା,

ଖୁବ୍ ନିକଟରେ ଗୋଟାଏ ବଂଧୁକରୁ ଗୁଳି ଫୁଟିଲା । ଏଭଳି ଶବ୍ଦ ସେ ଏଠାକୁ ଆସିବା ଦିନଠାରୁ କେବେ ଶୁଣି ନଥିଲା । ତା' ମନରେ ଛାନିଆଁ ପଶିଗଲା । ପୁଣି ଲାଗ ଲାଗ ତିନି ଚାରିଟା ଗୁଳି ଫୁଟିବାର ଶବ୍ଦ । ଘଟଣା କ'ଣ ଜାଣିବାକୁ ସନିଆଁ କୁଡ଼ିଆ ବାହାରକୁ ଚାଲିଗଲା ।

ଜଣେ ମାଓବାଦୀ ଯୁବକ ସମସ୍ତ ଶିବିରବାସୀଙ୍କୁ ସାବଧାନ କରି ଦେଇ କହିଲା, 'ଆମ ଜଙ୍ଗଲ ଭିତରେ କମ୍ବିଂ ଅପରେସନ୍ ପାଇଁ ଏସ୍.ଓ.ଜି. ଏବଂ ସି.ଆର.ପି. ଫୋର୍ସ ପଶି ଆସିଲେଣି । ସେମାନେ ଯେକୌଣସି ମୁହୂର୍ତ୍ତରେ ଶିବିର ପାଖରେ ପହଞ୍ଚିଯାଇ ପାରନ୍ତି । ତେଣୁ ସୈନିକମାନେ ନିଜ ନିଜର ଅସ୍ତ୍ରଶସ୍ତ୍ର ଧରି ପ୍ରସ୍ତୁତ ହେଇଯାଅ ।'

ଚାହୁଁଚାହୁଁ ସତକୁ ସତ ଶହଶହ ମାଓବାଦୀ ସୈନିକ ଅସ୍ତ୍ରଶସ୍ତ୍ର ଧରି ଦୌଡ଼ିଲେ । ଶିବିର ଚାରିପଟରୁ ଢୋ'-ଢା' ଶବ୍ଦ ଶୁଣାଗଲା । ସନିଆଁ କୁଡ଼ିଆ ଭିତରକୁ ପଶିଆସି କହିଲା- 'ମା'ଲୋ ! ସରକାରୀ ପୁଲିସ ମାଡ଼ି ଆସିଲେଣି । କିଛି ଦୂରରେ ସେମାନଙ୍କ ସହିତ ମାଓବାଦୀଙ୍କର ଘମାଘୋଟ ଲଢ଼େଇ ଚାଲିଛି । ଶିବିର ଭିତରେ ଆଉ କେହି ନାହାନ୍ତି । ଯୁବକମାନେ ଅସ୍ତ୍ରଶସ୍ତ୍ର ଧରି ଏକମୁହାଁ ହୋଇ ଦଉଡୁଛନ୍ତି । ମହିଳା ମାଓବାଦୀମାନେ ବି ତାଙ୍କ ପଛେପଛେ ଧାଇଁଛନ୍ତି । ମୋତେ ଜଣା ପଡୁଛି, ବହୁତ ସଂଖ୍ୟାରେ ପୁଲିସ ଆସିଛନ୍ତି । ଏଭଳି ପରିସ୍ଥିତିରେ ଆମେ କ'ଣ କରିବା, ମୋତେ କିଛି ବୁଦ୍ଧି ଦିଶୁନାହିଁ । ତୁ କହ ମା'- ଏ' ବିପଦବେଳେ ମୁଁ କ'ଣ କରିବି ?'

ରତ୍ନପ୍ରଭା କହିଲା, 'ମଉସା ! ବିପଦବେଳେ ଧୈର୍ଯ୍ୟର ସହିତ ପରିସ୍ଥିତିକୁ ମୁକାବିଲା କରିବା କଥା । ବ୍ୟସ୍ତ ହେଇ ଏଣେତେଣେ ଦୌଡ଼ିଲେ କିଛିଲାଭ ହେବନାହିଁ । ତମକୁ ତ ବନ୍ଧୁକ ଚଳେଇବା ଜଣାନାହିଁ । ତେଣୁ ତମେ ଏବେ କୁଆଡ଼େ ଯାଅନାହିଁ । ଏଇ କୁଡ଼ିଆରେ ରହି ଥା' । ଯଦି ମାଓବାଦୀମାନେ ପଛଘୁଞ୍ଚା ଦେଇ ଶିବିର ଛାଡ଼ି ପଳାନ୍ତି, ତେବେ ଆମେ ପୁଲିସ ପାଖରେ ଆତ୍ମ ସମର୍ପଣ କରିଦେବା । ମୁଁ ଭାବୁଛି, ସେଇଟା ଆମପାଇଁ ହେବ, ଭଗବାନଙ୍କର

ବଡ଼ ଆଶୀର୍ବାଦ । ଯଦି ମାଓବାଦୀମାନେ ପୁଲିସକୁ ମାରି ଗୋଡ଼ାନ୍ତି, ତେବେ ଆମେ ଯେମିତି ଅଛୁ, ସେଇମିତ ରହିଥିବା ।'

ସୂର୍ଯ୍ୟାସ୍ତ ପରେ ଢୋ'–ଢା' ଶବ୍ଦ ବେଳକୁ ବେଳ ବଢ଼ି ଚାଲିଲା । ବନ୍ଧୁକର ଗୁଳି ଶବ୍ଦ ସାଙ୍ଗକୁ ବୋମା ଫୁଟିବାର ଶବ୍ଦରେ ସମଗ୍ର ଜଙ୍ଗଲଟା ଥରି ଉଠୁଥାଏ । ବଣୁଆ ଜୀବଜନ୍ତୁମାନେ ଜୀବନ ବିକଳରେ ଏଣେ ତେଣେ ଧାଉଁଥା'ନ୍ତି । ଧୂଆଁର କୁଣ୍ଡଳୀ ଦୂର ଆକାଶରେ ଦେଖା ଯାଉଥାଏ ।

କିଛି ସମୟ ପରେ ଜଣେ ମାଓବାଦୀ ଯୁବକ ଆସି ଶିବିରରେ ଥିବା ଅଳ୍ପ କିଛି ସୈନିକଙ୍କୁ କହିଲା, 'ଏସ୍.ଓ.ଜି.ଙ୍କ ଗାଡ଼ି ଲ୍ୟାଣ୍ଡ ମାଇନ୍‌ରେ ଉଡ଼ି ଯାଇଛି । ସେମାନେ ସବୁ ମରି ପଡ଼ିଛନ୍ତି । ଅନ୍ୟ ପୁଲିସ ଏସ୍.ଓ.ଜି.ମାନେ ଭୟରେ ଜଙ୍ଗଲ ଛାଡ଼ି ପଳେଇ ଗଲେଣି । ଆମର ବିଜୟ ହେଇଛି । ଆମ ଶିବିର ଏବେ ସୁରକ୍ଷିତ । ସମସ୍ତେ ନିଜ ନିଜ କୋଠରୀକୁ ଯାଇ ସାବଧାନରେ ରୁହ । ଏହା ହେଉଛି, ସର୍ଦ୍ଦାରଙ୍କର ଆଦେଶ' ।

କିଛି ସମୟ ପରେ ମହିଳା ମାଓବାଦୀମାନେ ଶିବିରକୁ ଫେରିବାକୁ ଲାଗିଲେ ।

ଏତେଗୁଡ଼ାଏ ଘଟଣା ଏତେ ଶୀଘ୍ର ଘଟି ଗଲାଣି ସତ; କିନ୍ତୁ ସନିଆଁ ଓ ରତ୍ନପ୍ରଭା ଉପରେ ତା'ର ପ୍ରଭାବ କିଛି ପଡୁ ନଥାଏ । ସେମାନଙ୍କର ଏକମାତ୍ର ଇଚ୍ଛା, ମାନସ ବା ମନୁଆଁକୁ କେମିତି ଟିକେ ଦେଖି ପକାନ୍ତେ । ସେତିକିରେ ତାଙ୍କର ଅଧା ଦୁଃଖ ଦୂର ହେଇ ଯାଆନ୍ତା ।

ସେଦିନ ବହୁତ ରାତି ପର୍ଯ୍ୟନ୍ତ ମାଓବାଦୀ ସୈନିକମାନେ ଜାଗ୍ରତ ହୋଇ ଶିବିରକୁ ଜଗି ରହିଲେ । ସର୍ଦ୍ଦାରଙ୍କ ଆଦେଶ ଥାଏ, କେହି ଶୋଇବେ ନାହିଁ । ଆହତ ଓ ମୃତ ଏସ୍.ଓ.ଜି.ମାନଙ୍କ ପାଇଁ ପୁଲିସ ପ୍ରତିଶୋଧ ପରାୟଣ ହୋଇପାରେ । ସାରା ଜଙ୍ଗଲରେ ସବୁ ରାସ୍ତାରେ ପୁଣି ପାହାଡ଼ ଉପରେ, ବୁଦାମୂଳେ ମାଓବାଦୀମାନେ ଅସ୍ତ୍ରଶସ୍ତ୍ର ଧରି ଲୁଚି ଛପି ରହିଛନ୍ତି । ତାଙ୍କପାଇଁ ଖାଦ୍ୟପାଣି ଯୋଗାଇ ଦିଆଯିବ ।

ସନିଆଁକୁ ଡାକରା ଆସିଲା– ସେ ରୋଟି ମାଂସ ତରକାରୀ ଧରି ଦାନ୍ତୁଆଣି ମନ୍ଦିର ପାଖ ଜଙ୍ଗଲକୁ ଯିବ । ରତ୍ନପ୍ରଭା କହିଲା, 'ମଉସା ! ମୁଁ ବି ତମ ସାଙ୍ଗରେ ଯିବି । ସେମାନଙ୍କୁ ତ ପାଣି ଯୋଗେଇ ଦେବାକୁ ପଡ଼ିବ । ସେ କାମଟା ମୁଁ କରିବି ।'

ସନିଆଁ ତା' ମୁହଁକୁ ମଟମଟ କରି ଚାହିଁଲା; କିନ୍ତୁ କିଛି କହି ପାରିଲା ନାହିଁ । ସେ କ'ଣ କରିବାକୁ ଚାହୁଁଛି, ସେ କଥା ରତ୍ନପ୍ରଭା ବୁଝିଗଲା । ନିଜେ ଜଣେ ମହିଳା ମାଓବାଦୀର ଗୋଟାଏ ପୁରୁଣା ପୋଷାକ ପିନ୍ଧି ବାହାରି ପଡ଼ିଲା । ତା'ର ସାହସ ଦେଖି ସନିଆଁ ଆଶ୍ଚର୍ଯ୍ୟ ହେଇ ଯାଇଥିଲା ।

ରାତ୍ରିର ଘନ ଅନ୍ଧକାର ଭିତରେ ଆଉ କେତେଜଣ ସାହାଯ୍ୟକାରୀଙ୍କ ସହିତ ସନିଆଁ ଆଉ ରତ୍ନପ୍ରଭା ବାହାରି ପଡ଼ିଲେ । ସେମାନେ ବାଟରେ କେତୋଟି ଦଳରେ ଭାଗ ଭାଗ ହୋଇ ଅଲଗା ଅଲଗା ରାସ୍ତାରେ ଚାଲିଥା'ନ୍ତି । ଇସାରା ପାଇ ସେମାନେ ଗୁପ୍ତ ସ୍ଥାନମାନଙ୍କରେ ସୈନିକମାନଙ୍କୁ ଖାଦ୍ୟ ପୁଡ଼ିଆ ଓ ପାଣି ଦେଇ ଚାଲିଥା'ନ୍ତି । ଚାରିଆଡ଼େ ଶୂନ୍‌ଶାନ । କାହାରି ତୁଣ୍ଡରେ ଭାଷା ନାହିଁ । ସମସ୍ତେ ଯନ୍ତ୍ରଭଳି କାମ କରି ଚାଲିଥା'ନ୍ତି । ଏତେ ଶୃଙ୍ଖଳା, ଏତେ ବିଶ୍ୱାସ ପୁଣି ଏତେ ନିଷ୍ଠାର ସହିତ ମାଓବାଦୀମାନେ କାମ କରନ୍ତି ? ରତ୍ନପ୍ରଭା ଏ' ସବୁ ଦେଖି ଭାବୁଥିଲା– ସେଇଥିପାଇଁ ଏମାନେ ଦ୍ରୁତଗତିରେ ତାଙ୍କର ଲକ୍ଷ୍ୟ ପୂରଣ କରି ପାରୁଛନ୍ତି । ଶହଶହ ମାଓବାଦୀ ବଣବୁଦା, ଜଙ୍ଗଲ, ପାହାଡ଼ ପଥର ସନ୍ଧିରେ ଲୁଚି ରହିଲେ ବି କାହାରିକୁ କିଛି ଜଣା ପଡୁନାହିଁ । ଯଦି ଏହି ବାଟଦେଇ ଏସ୍.ଓ.ଜି., ସି.ଆର୍.ପି.ଏଫ୍. କିମ୍ବା ପୁଲିସ ଆସନ୍ତି, କେହି ତ ଜଣେ ବଞ୍ଚିକି ଫେରି ପାରିବେ ନାହିଁ ।

ଟର୍ଚ୍ଚ ଲାଇଟ୍ ଇସାରାରେ ପୁଣି ଗୋଟାଏ ଅନ୍ଧାରୁଆ ଜାଗାରେ ତାଙ୍କୁ ଖାଦ୍ୟ ଦେବାକୁ ପଡ଼ିଲା । ତା'ପରେ ସେମାନେ ଅଳ୍ପ କିଛି ବାଟ ଯାଇଛନ୍ତି, ରତ୍ନପ୍ରଭା ଗୋଟାଏ କାଠଗଣ୍ଡି ଉପରେ ଲଥ୍ କରି ବସି ପଡ଼ିଲା । ସୈନିକମାନେ ରୋଟି ମାଂସ ଖାଇଲେ । ପାଣି ପିଇଲେ । ସନିଆଁ ରତ୍ନପ୍ରଭାର ଅବସ୍ଥାକୁ

ଦେଖି ବୁଝି ପାରୁଥିଲା । ବିଚାରୀ ଥକି ପଡ଼ିଲାଣି । କିଛି ସମୟ ଛୁଆଟା ବିଶ୍ରାମ ନେଉ । ସେ ଯାଇ ତା' ପାଖରେ ବସିଲା । କୋଳରେ ରତ୍ନପ୍ରଭା ମୁଣ୍ଡକୁ ରଖିଲା । ଘଣ୍ଟାଏ ଯାଇଛିକି ନାହିଁ ରତ୍ନପ୍ରଭାକୁ ଉଠାଇଲା । ସନିଆଁ କହିଲା ମା' ! ରାତି ପାହିଲାଣି । ଏବେ ଆମକୁ ଫେରି ଯିବାକୁ ପଡ଼ିବ । ମୋ ଝୁଡ଼ିରେ ତ ଆଉ ଖାଦ୍ୟ ପୁଡ଼ିଆ ନାହିଁ, ପିଇବା ପାଣି ବି ଶେଷ ହେଇ ଗଲାଣି ।

ଆଖି ମଳି ମଳି ରତ୍ନପ୍ରଭା କହିଲା, 'ମଉସା ! ମୁଁ ଗୋଟାଏ ଦୁଃସ୍ୱପ୍ନ ଦେଖିଲି । ଏଇ ଅଳ୍ପ ଟିକେ ନିଦରେ ଏତେ ବଡ଼ ସ୍ୱପ୍ନଟା କେମିତି ଦେଖିଲି, ଜାଣି ପାରୁନାହିଁ ।'

ସନିଆଁ କହିଲା, 'କ'ଣ ଦେଖିଲୁ ? ମାନସ ସ୍ୱପ୍ନରେ ଆସିଥିଲା କି ?'

ରତ୍ନପ୍ରଭା କହିଲା, 'ମୁଁ ସ୍ୱପ୍ନ ଦେଖିଲି, ମୋ ବାପା, ଆମ ଘରେ ମାନସକୁ ଆଣି ଖୁବ୍ ପିଟୁଛନ୍ତି । ସେ କହୁଛନ୍ତି- 'ତୋ'ରି ପାଇଁ ମୋ ଝିଅକୁ ମାଓବାଦୀମାନେ ଅପହରଣ କରି ନେଇ ଯାଇଛନ୍ତି । ସବୁ ଦୋଷ ତୋ'ର ।' ପୁଲିସ ବି ତାକୁ ବାଡ଼େଇ ବାଡ଼େଇ ରକ୍ତାକ୍ତ କରି ଦେଉଛନ୍ତି । ତାଙ୍କ ମୁଣ୍ଡରୁ ରକ୍ତ ପିଚ୍ ପିଚ୍ ହେଇ ବାହାରୁଛି । ମୁଁ ଯାଇ ତାଙ୍କୁ ଜାବୁଡ଼ି ଧରି କାନ୍ଦୁଛି । ମୋର ଚେତା ବୁଡ଼ି ଯାଉଛି । ଏତିକିବେଳେ ତମ ଡାକରେ ମୋ ଦିନ ଭାଙ୍ଗିଗଲା ।'

ସନିଆଁ କହିଲା, 'ରକ୍ତ ସ୍ୱପ୍ନ ଶୁଭ ଫଳ ଦିଏ । ତୋ' ବାପାଙ୍କ ରୂପ ହୋଇ ତୋତେ ଯିଏ ଦେଖାଦେଲେ, ସେ ହେଉଛନ୍ତି, ଡୁମା ମା'ପ୍ରୁ । ସେମାନେ ତ ଆମ ପାଖେପାଖେ ଅଛନ୍ତି । କିଛି ଚିନ୍ତା କରନା । ମୁଁ ଦାନ୍ତକାଠି ଦି'ଖଣ୍ଡ ଭାଙ୍ଗି ଆଣୁଛି । ଦାନ୍ତ ଘଷି ଘଷି ଶିବିରକୁ ଫେରିଯିବା । ତୁ ଏଇଠି ବସିଥା, ମୁଁ ଆସୁଛି ।'

ସନିଆଁ ଚାଲିଗଲା ପରେ ରତ୍ନପ୍ରଭା ସେହି କାଠଗଣ୍ଡି ଉପରେ ବସି ରାତିର ସ୍ୱପ୍ନକୁ ସମୀକ୍ଷା କରୁଥାଏ । ତା' ସାମନା ଦେଇ ଦୁଇଜଣ ମାଓବାଦୀ ଚାଲିଗଲେ । ଦୁଇଜଣଙ୍କ କାନ୍ଧରେ ବନ୍ଧୁକ, ଅଣ୍ଟାରେ ଗୁଳିଭରା ପାଉଚ୍ ଆଉ

କାନ୍ଧରେ କ୍ରସ୍ ବେଲ୍ଟ । ସେମାନଙ୍କର ମୁହଁରେ ଅଳ୍ପ ଅଳ୍ପ ଦାଢ଼ି । ଚାଲିରେ ସିଂହର ଠାଣି । ତାଙ୍କୁ ନିର୍ଜନ ସ୍ଥାନରେ ଦେଖି ସେ ଚମକି ପଡ଼ିଲା । ସେମାନେ ତାକୁ କଡ଼ା ଦୃଷ୍ଟିରେ ଚାହିଁଲେ । ସିଧା ସିଧା ତାଙ୍କ ବାଟଦେଇ ଚାଲିଗଲେ । ସେ ମୁହଁ ଉଠାଇ ତାଙ୍କୁ ଚାହିଁ ପାରିଲା ନାହିଁ । ସେମାନଙ୍କୁ ପଛରୁ ଲକ୍ଷ୍ୟ କଲା– ଜଣେ ମାଓବାଦୀ ଯୁବକର ଚାଲି ଠିକ୍ ମାନସ ଭଳି । ତା'ର ଚାହାଣୀ ଏବଂ ହାତ ହଲାଇବା ଢଙ୍ଗ ବି ମାନସ ସହିତ ମିଶି ଯାଉଛି । ମୁଣ୍ଡରେ ଟୋପିଟା ପିନ୍ଧିଛି । ନହେଲେ ତା' ମୁହଁର ଆକୃତିଟା ଜଣା ପଡ଼ିଥା'ନ୍ତା ।

ରତ୍ନପ୍ରଭା ଭାବୁଥିଲା, ସେ ଯୁବକଟା ମାନସ ନୁହେଁ ତ !

ଦାନ୍ତକାଠି ଦୁଇଖଣ୍ଡ ଧରି ବୁଦା ଭିତରୁ ସନିଆଁ ଆସି ପଚାରିଲା, ''ଏମିତି ସେଆଡ଼କୁ ଅନେଇଛୁ କାହିଁକି ?'

ରତ୍ନପ୍ରଭା କହିଲା– 'ମଉସା ! ଏବେ ଦୁଇଜଣ ମାଓବାଦୀ ଯୁବକ ଏଇବାଟ ଦେଇଗଲେ । ତାଙ୍କ ଭିତରୁ ଜଣକର ଚେହେରା ଆଉ ଚାଲି ଠିକ୍ ମାନସ ଭଳି ଲାଗୁଥିଲା । ସେ କ'ଣ ତେବେ ଏଇଠି ଅଛନ୍ତି କି ?'

ହସିଲା ସନିଆଁ । କହିଲା, 'ଆରେ ମା' ! ତୁ ସବୁବେଳେ ତା' କଥାକୁ ମନେ ପକଉଛୁ ତ ! ସବୁ ଯୁବକ ତୋତେ ସେଇଥିପାଇଁ ମାନସ ଭଳି ଦିଶୁଛନ୍ତି । ସେ ଯଦି ଏଇବାଟେ ଯାଉଥିଲା, ତତେ ଦେଖି ସେ ନିଶ୍ଚୟ ଚିହ୍ନି ପାରିଥା'ନ୍ତା । ତା'ରି ବୟସର ଅନେକ ଯୁବକ ଏଠି ମାଓବାଦୀ ହେଇ ରହିଛନ୍ତି । ହଉ, ଯଦି ମାଆ ଦାନ୍ତୁଆଣିଙ୍କର ଇଚ୍ଛା ଥାଏ, ତେବେ ମନୁଆଁ ସହିତ ଆମର ନିଶ୍ଚୟ ଦେଖା ହେବ ।'

ସନିଆଁ ସିନା ମନବୋଧ କରିବାକୁ ଏମିତି କଥାଟାକୁ ବୁଲେଇ କହିଦେଲା, କିନ୍ତୁ ମନଟା ତା'ର ଘାଣ୍ଟି ଚକଟି ହେଲା । କାଲି ମହେନ୍ଦ୍ର କହୁଥିଲା, ମନୁଆଁକୁ ସେ ଶିବିରକୁ ଆଣିବାର ଦାୟିତ୍ୱ ନେଇଛି । ସେ ନିଶ୍ଚୟ ଏଇବାଟ ଦେଇ ଯାଇଥିବ । ଟିକେ ଦେଖି ଦେଇଥିଲେ ସନ୍ଦେହଟା ଦୂର ହେଇ ଯାଇଥା'ନ୍ତା ।

ସେ ଲମ୍ବାଲମ୍ବା ପାଦ ପକେଇ ଆଗେଇ ଚାଲିଲା । ରତ୍ନପ୍ରଭାର ମନଟା ବି ବିକଳ ହେଉଥିଲା । ସେ ଦୁହିଁଙ୍କର ଭାବନା ଏକା । ଆଶା ଓ ଆଶଙ୍କା ବି ସମାନ । ବଣବୁଦାକୁ ଆଡ଼େଇ ଆଡ଼େଇ ଯେତେ ଶୀଘ୍ର ଚାଲିଲେ ବି ସେ ଦୁଇଜଣ ଯୁବକ ତାଙ୍କର ଦୃଷ୍ଟିଗୋଚର ହେଲେନାହିଁ । ଶେଷରେ ସେମାନେ ଶିବିର ପାଖରେ ଥିବା କୁଡ଼ିଆରେ ପହଞ୍ଚିଗଲେ ।

ରତ୍ନପ୍ରଭା ମୁହଁ ଖୋଲି କହିଲା, 'ମଉସା ! ମୋ ପାଇଁ ଗୋଟାଏ କାମ କରିବ ? ମୋ ମନ କହୁଛି, ସେ ଯୁବକ ଜଣକ ନିଶ୍ଚୟ ମାନସ ହେଇଥିବ । ତମେ ଟିକେ ପୁରୁଷ ଶିବିରକୁ ଯାଇ ବୁଲିଆସ । ତମେ ନିଶ୍ଚୟ ତାକୁ ଚିହ୍ନି ପାରିବ । ହଁ, ଆଉ ଗୋଟାଏ କଥା, ତମେ ମାନସକୁ ଚିହ୍ନିଲେ ବି ସେଇଠି ତମର ପରିଚୟ ଦେବନାହିଁ । କେବଳ ଦେଖିଦେଇ ପଳାଇ ଆସିବ । ଯଦି ସେ ଆମ ପାଖରେ ଆସି ରହିଥା'ନ୍ତି, ସେତିକି ଆମପାଇଁ ବହୁତ ବଡ଼ ସୁଖର କଥା ହେବ ।'

ସନିଆଁ ଯାହା ଭାବୁଥିଲା, ରତ୍ନପ୍ରଭା ସେହି କଥା ହିଁ କହିଦେଲା । ସେ ଖାଦ୍ୟ ନେଇଥିବା ଝୁଡ଼ିଟାକୁ ଉପଯୁକ୍ତ ସ୍ଥାନରେ ରଖି ପୁରୁଷ ଶିବିରକୁ ଯିବାକୁ ବାହାରି ପଡ଼ିଲା । ଠିକ୍ ସେତିକିବେଳେ ଦୁଇଜଣ ମାଓବାଦୀ ଯୁବକ ଆସି ସେଇଠି ପହଞ୍ଚିଗଲେ । ସେମାନଙ୍କୁ ଦେଖି ସନିଆଁ ଚମକି ପଡ଼ିଲା । ରତ୍ନପ୍ରଭା ତାଙ୍କ ପାଖକୁ ଏକ ପ୍ରକାର ଦୌଡ଼ି ଗଲା । ସେ ଭାବିଲା– ମାନସ ବୋଧେ ଖବର ପାଇ ତା' ପାଖକୁ ଚାଲି ଆସିଛି । କିନ୍ତୁ ତା' ଭାବନା ଭୁଲ୍ ଥିଲା । ଯୁବକ ଦୁଇଜଣ ଅନ୍ୟ ମାଓବାଦୀ ଥିଲେ । ସେମାନେ କୁଡ଼ିଆ ପାଖକୁ ଆସି ରତ୍ନପ୍ରଭାକୁ କହିଲେ– 'ମାଡ଼ାମ୍ ! ଆପଣଙ୍କ ପାଇଁ ଗୋଟାଏ ଗୁଡ୍ ନିଉଜ୍ । ସର୍ଦ୍ଦାରଙ୍କ ଆଦେଶ ହେଇଛି, ଆପଣଙ୍କୁ ଆଜି ମୁକ୍ତି ଦିଆଯିବ । ତମ ପାଇଁ ବାହାରେ ଗାଡ଼ି ରେଡ଼ିହେଇ ରହିଛି । ଆମ ସାଙ୍ଗରେ କିଛିବାଟ ଚାଲିଚାଲି ଯିବାକୁ ପଡ଼ିବ । ତା'ପରେ ଗୋଟାଏ ଗୁପ୍ତ ସୁଡ଼ଙ୍ଗ ବାଟଦେଇ ରାସ୍ତାକୁ ବାହାରି କୁଡ଼ିଆ ଫାର୍ମ ପାଖରେ ଛାଡ଼ିଦେଇ ଆସିବୁ । ତମେ ସେଇଠୁ ନିଜ ଚେଷ୍ଟାରେ

ଘରକୁ ଚାଲିଯିବ । ହଁ, ଗୋଟାଏ କଥା ମନେ ରଖିଥିବ । ଆମ ଶିବିର କଥା କିମ୍ୱା ଗୁପ୍ତ ସୁଡ଼ଙ୍ଗ ବିଷୟରେ କାହାରିକୁ କେବେ ବି କହିବ ନାହିଁ । ସର୍ଦ୍ଦାର କହିଛନ୍ତି, ତମକୁ ସାବଧାନ କରିଦେବାକୁ । ଯଦି ଏ'କଥା କେବେ ପ୍ରଘଟ କରିଦିଅ, ତେବେ କଠିନରୁ କଠିନତମ ଦଣ୍ଡ ଭୋଗ କରିବ । ପୁଣିଥରେ ତମେ ଆସି ଏଇଠି ବନ୍ଦୀ ହେଇ ରହିବ । ଏବେ ତମେ ପ୍ରସ୍ତୁତ ହେଇପଡ଼ । ନିଜ ପୋଷାକପତ୍ର ପିନ୍ଧି ପକାଅ । ଆମେ ଆଉ ଘଣ୍ଟାଏ ପରେ ଆସି ତମକୁ ସାଙ୍ଗରେ ନେଇଯିବୁ ।'

ଦୁଇଜଣ ମାଓବାଦୀ ଯୁବକ ଏତିକି କଥା କହିସାରି ଲମ୍ୱା ପାଦ ପକେଇ ଶିବିର ସର୍ଦ୍ଦାରଙ୍କ ଘର ଆଡ଼କୁ ଚାଲିଗଲେ ।

ସନିଆଁ ମୂକ ପାଲଟି ଗଲା । ରତ୍ନପ୍ରଭା ତା' ମୁହଁକୁ ଚାହିଁ କେତେ କ'ଣ ଭାବୁଥିଲା । 'ହଠାତ୍ ଏ' କ'ଣ ହେଇଗଲା ? ମୋତେ ତ ମୁକ୍ତି ମିଳିଲା ନାହିଁ, ବରଂ ମୋ ଦେହରୁ ପ୍ରାଣକୁ ଛଡ଼େଇ ନିଆଯାଉଛି । ସେଦିନ ସର୍ଦ୍ଦାର ନିଜେ ମୋତେ କହିଥିଲା, ମାନସ ଶିବିରକୁ ଆସିଗଲେ, ତୋତେ ଛାଡ଼ି ଦିଆଯିବ । ତେବେ ଆଜି ମାନସ ଆସି ଶିବିରରେ ପହଞ୍ଚି ଯାଇଛି । ଯଦି ମୁଁ ଆଜି ଚାଲି ଯାଉଛି, ତେବେ ମାନସ ସହିତ କେବେ ବି ଦେଖା ହେଇ ପାରିବ ନାହିଁ । କ'ଣ କଲେ, କେମିତି ମୁଁ ମାନସକୁ ଭେଟି ପାରିବି' ?

ଏମିତି ଭାବୁଭାବୁ ରତ୍ନପ୍ରଭା ଲଥ୍‌କରି ବସି ପଡ଼ିଲା । ସନିଆଁ ତା' ମନକଥାକୁ ଠିକ୍ ଭାବରେ ବୁଝି ପାରୁଥିଲା । କିନ୍ତୁ କିଛି କରିବା ପାଇଁ ତା' ମୁଣ୍ଡରେ ବୁଦ୍ଧି ଜୁଟୁ ନଥିଲା । ସେ ଆଖି ବୁଜି ଦୁଇ ହାତଯୋଡ଼ି ମାଆ ଦାନ୍ତୁଆଣିଙ୍କୁ ସ୍ମରଣ କରି ସେଇଠି ଠିଆହେଇ ରହିଲା । ରତ୍ନପ୍ରଭା ଦେଖିଲା ସନିଆଁ ସତେ ଯେମିତି ଗୋଟାଏ ପଥର ମୂର୍ତ୍ତିରେ ପରିଣତ ହେଇଯାଇଛି । କେବଳ ତା' ଆଖିରୁ ଲୁହଧାର ଠପ୍‌ଠପ୍ ହେଇ ତଳେ ପଡୁଛି ।

ରତ୍ନପ୍ରଭା ଡାକିଲା, 'ମଉସା ! କ'ଣ କରିବା ? ମୁଁ ଏଠୁ ଚାଲିଗଲେ ତ ପାଗଳ ହେଇଯିବି । ମୋତେ ରକ୍ଷାକର । ମୁଁ ମାନସକୁ କ'ଣ ଦେଖି ପାରିବି

ନାହିଁ ?' ମୋର ମୁକ୍ତି ଦରକାର ନାହିଁ ମଉସା ! ମୁଁ ଏଇଠି ରହିବି । ମୋତେ ମାନସ ହିଁ ଦରକାର । ମାନସକୁ ଛାଡ଼ି ମୁଁ ବଞ୍ଚିପାରିବି ନାହିଁ ।'

କଥା କହୁ କହୁ ରତ୍ନପ୍ରଭା ଥରି ଉଠିଲା, ତା'ର ଚେତା ବୁଡ଼ିଗଲା । ସନିଆଁ ଦୌଡ଼ିଯାଇ ତାକୁ କୋଳେଇ ଧରି ତା' ମୁହଁରେ ପାଣି ଛାଟିଲା । କୋଳକୁ ଆଉଜେଇ ଆଣି ବୁଝାଇ କହିଲା– 'ମାଆ ଲୋ ! ଏମିତି ଅଧୈର୍ଯ୍ୟ ହେଲେ କିଛି ହେଇ ପାରିବ ନାହିଁ । ଟିକେ ଶାନ୍ତ ହେଇ ଯା' । ଆମେ ଉପାୟ ଖୋଜି କିଛି ଗୋଟାଏ ବ୍ୟବସ୍ଥା କରିବା । ମୁଁ ଭାବୁଛି– ସେମାନେ ଆସିଲେ ମୁଁ କହିବି, ଝିଅଟାର ଦେହ ଅସୁସ୍ଥ । ସେ ଆଜି ଯାଇ ପାରିବ ନାହିଁ । ତା' ଦେହଟା ଭଲ ହେଇଯାଉ । ସେ ଯେତେବେଳେ କହିବ, ତମେ ତାକୁ ନେଇ ଛାଡ଼ିଦେଇ ଆସିବ ।'

ସନିଆଁର କଥାଟା ରତ୍ନପ୍ରଭାର ମନକୁ ପାଇଲା । ସେ ଅଧିକ ଅସୁସ୍ଥ ଥିବାର ଛଳନା କରି କୁଡ଼ିଆରେ ଗୋଟାଏ କୋଣରେ ଶୋଇ ପଡ଼ିଲା । ସନିଆଁ ତା' ଉପରେ ଚାଦର ଖଣ୍ଡିଏ ଘୋଡ଼େଇ ଦେଲା । ଯୁବକ ଦୁଇଜଣଙ୍କ ଆସିବା ବାଟକୁ ଜଗି ରହିଲା । କିଛି ସମୟ ପରେ ସେ ଦେଖିଲା– ସତକୁ ସତ ରତ୍ନପ୍ରଭା ଦେହର ତାତିଟା ବଢ଼ି ଚାଲିଛି । ଦେହଟା ବି ଥରୁଛି ।

ସନିଆଁ ମନକୁ ମନ କହିଲା– 'ଆଲୋ ମା ! ତୋ' ଦେହ ଅସୁସ୍ଥ ବୋଲି ମିଛରେ ମୁଁ କହିଦେଲି ବୋଲି ମା' ଦାନ୍ତୁଆଣି ରାଗିଯାଇ ତୋ ଦେହରେ ଜର ଭରି ଦେଇ ସାରିଲାଣି । କ'ଣ କରିବି ? ଆଉ ଟିକେ ଯାଉ, ଶିବିର ଭିତରକୁ ଯାଇ ତୋ' ପାଇଁ କିଛି ଔଷଧ ନେଇ ଆସିବି ।

ଯୁବକ ମାଓବାଦୀ ଦୁଇଜଣ ଠିକ୍ ସମୟରେ ଆସି ରତ୍ନପ୍ରଭାର ଅବସ୍ଥାକୁ ଦେଖିଲେ । ସନିଆଁ କଥା ଶୁଣି ଫେରିଯାଇ ସର୍ଦ୍ଦାରକୁ ଜଣାଇଦେଲେ ।

ସନିଆଁର ଯୋଜନାଟା ସଫଳ ହେଲା । ରତ୍ନପ୍ରଭା ଅନିର୍ଦ୍ଦିଷ୍ଟ କାଳପାଇଁ ସେ କୁଡ଼ିଆରେ ରହିବାକୁ ଅନୁମତି ପାଇଗଲା ।



# ଡେର

ସେଦିନ ରାତିଟା ରତ୍ନପ୍ରଭା ପାଇଁ ଥିଲା ସବୁଠାରୁ ସୁଖକର । ଯେଉଁ ମହିଳା ମାଓବାଦୀମାନେ ତା' ସହିତ ରହୁଥିଲେ, ସେମାନେ ଏବେ କେଉଁଠି ରହୁଛନ୍ତି, କୁଆଡ଼େ ଗଲେ କେଜାଣି, ଆଉ ସେମାନଙ୍କୁ ସେ ଦେଖିବାକୁ ପାଉନାହିଁ । ଏକୁଟିଆ ସେ କୁଡ଼ିଆରେ ଶୋଇଛି । ସନିଆଁ ସେହି କୁଡ଼ିଆ ବାରଣ୍ଡାରେ ସପ ଖଣ୍ଡିଏ ପକେଇ ଶୋଇ ପଡ଼ିଛି । ରତ୍ନପ୍ରଭା ବୁଝିଯାଇଛି, ସେ ନୂଆକରି ଆସିଥିବାରୁ ତାକୁ ଜଗାରଖା କରିବା ପାଇଁ ମହିଳା ମାଓବାଦୀ ପାଞ୍ଚଜଣଙ୍କୁ ନିୟୋଜିତ କରାଯାଇଥିଲା । ମଉସା ଆସିଗଲା ପରେ ସେମାନେ ଧୀରେ ଧୀରେ ଅନ୍ୟତ୍ର କୁଆଡ଼େ ଚାଲି ଯାଇଛନ୍ତି । ବରଂ ଭଲ ହେଇଛି । ଯେଉଁମାନେ ଯୁବା ବୟସରେ ଆସି ମାଓବାଦୀଙ୍କ ସହିତ ରହିଛନ୍ତି । ଦେଶର ବିକାଶ କାମ ବିରୁଦ୍ଧରେ କାମ କରୁଛନ୍ତି, ସେମାନ କି ପ୍ରକାର ମହିଳା, ତାହା ସହଜରେ ଜାଣି ହେଇଯାଉଛି । ଛାଡ଼, ଭଗବାନ ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ । ସେଗୁଡ଼ାକ ପାଖରେ ଥିଲେ, ତାକୁ ଟିକେ ଶାନ୍ତିରେ ମାନସ କଥାକୁ ମନେ ପକେଇବାକୁ ଦିଅନ୍ତେ ନାହିଁ ।

ମାନସର ମାନସୀ ହେଉଛି, ମୁଁ ରତ୍ନପ୍ରଭା । ଆମ ଭଲ ପାଇବାରେ ସାମାନ୍ୟତମ ମଇଳା ନାହିଁ । ପରସ୍ପର ପାଇଁ ଆମେ ଯେତେ ବେଶି ତ୍ୟାଗ କରିବା କଥା କରି ସାରିଛୁ । ପ୍ରେମର ଅନ୍ୟନାମ ହେଉଛି– ପୂଜା । ପ୍ରେମକୁ ସଫଳ କରିବାପାଇଁ ଆମେ ଦୁହେଁ ଦୀର୍ଘଦିନ ହେଲା, ସାଧନା କରି ଚାଲିଛୁ । ପୂଜା ଆରାଧନାରେ ଯଦି ଭଗବାନ ମଣିଷ ପାଖକୁ ଆସି ପାରୁଛନ୍ତି, ତେବେ ଆମ ନିଷ୍ଠାର ଫଳ ଆମକୁ ନିଶ୍ଚୟ ମିଳିବ । ଏଥର ମାନସ ଦେଖାହେଲେ, ସଫାସଫା କହିଦେବି, ଚାକିରି କରିବା ତମର ଦରକାର ନାହିଁ । ଆମେ ଆଗ ବାହାହେଇ ପଡ଼ିବା । ତା'ପରେ ଦେଖିବ, ମୋ ସତୀତ୍ୱ ବଳରେ ତମେ କେଉଁଠୁ ଯାଇ କେଉଁଠି ପହଞ୍ଚି ପାରୁଛ । ତମର ପ୍ରତିଭା ଅଛି । ଦେହରେ ଶକ୍ତି ଅଛି । କେରିୟର ଅଛି ।

ଏଜୁକେଶନାଲ କ୍ୱାଲିଫିକେସନ୍ ଅଛି । ଯାହା ଯେତେବେଳେ ଚାହିଁବ, ତାହା କରିପାରିବ । କେବଳ ତମ ହାତରେ ଧନ ନାହିଁ । ଏଇୟା ତ ! ଅର୍ଥର ଅଭାବ ରହିବ ନାହିଁ । ମୋ ବାପା ମାଆଙ୍କର ଆମେ ତ କେବଳ ଦୁଇଜଣ ଝିଅ । ଭୁବନେଶ୍ୱରରେ ଆମର କୋଠା ଅଛି । ମୋ ଜେଜେ ଥିଲେ– ଜଣେ ଜମିଦାର । ତାଙ୍କର ଅକଳନ ସମ୍ପତ୍ତି ଗାଆଁରେ ପଡ଼ିଛି । ଏଣେ ବାପାଙ୍କର ଦରମା ତ ମାସକୁ ଅଶୀ ହଜାର ଟଙ୍କା । କ'ଣ ହେବ ସେସବୁ ତାଙ୍କର । ସେ ଯାହା କରୁଛନ୍ତି, ସେ ସବୁ ତ ଆମ ଦୁଇ ଭଉଣୀଙ୍କ ପାଇଁ । ତମେ ଯଦି ରାଜି ହେବ– ଆମ ଘରେ ଆସି ରହିପାରିବ । ଭୁବନେଶ୍ୱର କୋଠାଟା ତ ମୋ ନାଆଁରେ ଅଛି । ବାପା କହିଛନ୍ତି, ଘରଟାକୁ ବଡ଼ ଜ୍ୱାଇଁଙ୍କୁ ଦେଇଦେବେ । ଆଉ କେନ୍ଦୁଝରରେ ଯେଉଁ କୋଠା ତିଆରି ଚାଲିଛି, ସେଇଟାକୁ ହୀରଣ୍ୟପ୍ରଭା ବରକୁ ଦିଆଯିବ । ବାପା ରିଟାୟାର ହେବାପରେ ସେ ମାଆଙ୍କ ସାଙ୍ଗରେ ଗାଆଁକୁ ଚାଲିଯିବେ । ସେଇଠି ଯେଉଁ ଜମିବାଡ଼ି କୋଠାଘର ନଡ଼ିଆ ବଗିଚା, ଆମ୍ବତୋଟା ଅଛି, ତାକୁ ଦେଖାଶୁଣା କରି ସେ ଖୁସିରେ ରହିବେ ।

ସ୍ୱାଧୀନ ଭାବରେ ତମେ ଯଦି କିଛି ବିଜିନେସ୍ କରବାକୁ ଚାହିଁବ, ତେବେ ବାପା ତମପାଇଁ ତାଙ୍କ ନାଆଁରେ ୨୦/୨୫ ଲକ୍ଷ ଟଙ୍କା ବ୍ୟାଙ୍କରୁ ଆଣି ଋଣ ଦେଇ ପାରିବେ । ସେ ଋଣ ଶୁଝ ବା ନ ଶୁଝ, ବାପା କି ମାଆ ତମକୁ କେବେ ପଚାରିବେ ନାହିଁ ।

ତମେ ଯଦି ନିଜଗୋଡ଼ରେ ନିଜେ ଠିଆ ହେବାକୁ ଇଚ୍ଛା କରୁଛ, କେହି କେବେ କୌଣସି କାମରେ ବାଧା ଦେବେ ନାହିଁ । ତମର ଯଦି ଇଚ୍ଛା, ମିଲିଟାରୀରେ ପଶିବାକୁ, ସେଥିରେ ବରଂ ମୁଁ ନିଜକୁ ଧନ୍ୟ ମନେ କରିବି । ତମେ ତ ଇଣ୍ଟରଭ୍ୟୁ ଦେଇ ସାରିଛ, ସବୁ କ୍ଷେତ୍ରରେ ତମେ ପ୍ରଥମ ହେଇଛ, ଅହମ୍ମଦାବାଦର ଫାଇନାଲ ଇଣ୍ଟରଭ୍ୟୁଟା ବି ସରିଛି । ମୋର ବିଶ୍ୱାସ, ତମେ ସେଥିରେ ନିଶ୍ଚୟ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେବ । କମିଶନିଂ ଅଫିସର ପୋଷ୍ଟଟା ବହୁତ ମର୍ଯ୍ୟାଦା ସମ୍ପନ୍ନ ଚାକିରି । ଦେଶରକ୍ଷା ଭଳି ସମ୍ମାନ ଜନକ କାର୍ଯ୍ୟ ଆଉ କ'ଣ ଅଛି ? ସେଥିରେ ମୁଁ ବାଧା ଦେବିନାହିଁ । ସେସବୁ ପଛରେ ହେଉଥାଉ । ଯେତେଶୀଘ୍ର ସମ୍ଭବ ଆମର ବାହାଘରଟା ହେଇଯିବା ଦରକାର ।'

ବାହାରେ ଗୋଟାଏ କ'ଣ ଶବ୍ଦ ଶୁଣାଗଲା । ଚମକି ପଡ଼ିଲା ରତ୍ନପ୍ରଭା । ତା' ଭାବନାର ଖିଅ ଛିଡ଼ିଗଲା । ମଉସା ପଦାରେ ଶୋଇଥିଲେ, କିଛି ଅଘଟଣ ଘଟିନାହିଁ ତ ! ସେ କବାଟ ଖୋଲି ଦେଖିଲା– ସପଟା ଖାଲି ପଡ଼ିଛି । ମଉସା ନାହାନ୍ତି ।

ମଉସା ! ମଉସା ! ବୋଲି ଉଚ୍ଚସ୍ୱରରେ ଡାକିଲା ରତ୍ନପ୍ରଭା । ଏତେ ରାତିରେ ସେ କୁଆଡ଼େ ଗଲେ ଭାବି ଚିନ୍ତିତ ହେଇପଡ଼ିଲା । ହଁ, ବାପା ମନ ତ ! ମାନସ ଆସିଥିବା ଖବର ଶୁଣି ସେ କେମିତି ନିଦରେ ଶୋଇ ପାରିବେ । ମାନସକୁ ନିଜ ଆଖିରେ ଦେଖିବାର ଲାଳସା ସେ ସମ୍ଭାଳି ନପାରି ନିଶ୍ଚୟ ସେ ପୁରୁଷ ଶିବିର ଆଡ଼କୁ ଯାଇଥିବେ । ରତ୍ନପ୍ରଭାର ଅନୁମାନ ସତ୍ୟ ହେଲା । ସେ କୁଡ଼ିଆ ଦୁଆରେ ତାଙ୍କର ଫେରିବା ବାଟକୁ ଅପେକ୍ଷା କରୁ କରୁ ପୂର୍ବ ଆକାଶର ସିନ୍ଦୂରା ଫାଟିଲା । ସନିଆଁ ଶିବିର ଆଡୁ ଫେରୁଥିବାର ଦେଖି ସେ ଆଶ୍ୱସ୍ତ ହେଲା ।

ମାନସକୁ ତାଙ୍କର ଯେଉଁ ଆଖି ଦୁଇଟି ଦେଖି ଆସିଛି, ସେ ଆଖି ଦୁଇଟାକୁ ରତ୍ନପ୍ରଭା ଗଭୀର ଭାବରେ ଚାହିଁ ଭାବୁଥିଲା– 'ମଉସାଙ୍କର ଆଖି ଦୁଇଟି ନିଶ୍ଚୟ ଭାଗ୍ୟବାନ । ମୋର ଆଖି ଥାଇ କି ଲାଭ ? ତା' ପାଟିରୁ ବାହାରି ପଡ଼ିଲା– 'ମଉସା ! ଦେଖିଲ ତ ତମ ପୁଅକୁ । କେମିତି ଅଛନ୍ତି ? ଶୋଇଥିଲେ ନା' ତମ ସାଙ୍ଗରେ କିଛି କଥା ହେଲେ' ?

ସନିଆଁର ମୁହଁ ଉଜ୍ଜ୍ୱଳ ଦିଶୁଥିଲା । ସେ କହିଲା– 'ମା' ରତ୍ନପ୍ରଭା ! ଆଜି ଯାହା ଦେଖିଲି, ସେଥିରେ ମୋ ପେଟ ପୂରିଗଲା । ମାନସ ପାଖରେ ବସି ତା' ଦେହକୁ ଆଉଁସି ପକେଇଲି । ମାନସ ନିଘୋଡ଼ ନିଦରେ ଶୋଇ ପଡ଼ିଥିଲା । ଦିନସାରା ଚାଲି ଚାଲି ଜଙ୍ଗଲିଆ ରାସ୍ତାରେ ଆସିଛି ତ । ଥକ୍କା ଲାଗି ଯାଇଥିବ । ମୁଁ ଜାଣି ଜାଣି ତାକୁ ଉଠେଇଲି ନାହିଁ ।

ତା' ମାଆ ମରି ଯାଇଛି, ଏକଥା ତାକୁ କେମିତି କହିଥା'ନ୍ତି । ତୁ ଆସି ମୋ ସାଙ୍ଗରେ ଭେଟି ଯାଇଛୁ । ପାଖ କୁଡ଼ିଆରେ ତୁ ଏଇଠି ବନ୍ଦିନୀ ଜୀବନ କାଟୁଛୁ । ତତେ ଆସି ଦେଖା କରିବାକୁ ତାକୁ କହିଥା'ନ୍ତି । କିନ୍ତୁ ତା' ନିଦକୁ ଭାଙ୍ଗିବାକୁ ମନ ବଳିଲା ନାହିଁ । ଚୁପ୍‌ଚାପ୍ ତା' ପାଖରୁ ଉଠି ଚାଲି ଆସିଲି ।'

ରତ୍ନପ୍ରଭାର ଆଖି ପିଛୁଳା ପଡୁ ନଥିଲା । ସେ ସିଧା ଯାଇ ସନିଆଁର ଦୁଇହାତକୁ ଜାବୁଡ଼ି ଧରି ଆଣି ନିଜ ମୁଣ୍ଡ ଉପରେ ଥାପିଦେଲା । କହିଲା, 'ମଉସା ! ଆଜି ମୋତେ ନେଇ ଟିକେ ମାନସକୁ ଦେଖେଇ ଦିଅ ।'

ସନିଆଁ କହିଲା, 'ସେଇଟା ପରା ପୁରୁଷ ଶିବିର । ସେଠିକି ତୁ କେମିତି ଯିବୁ । ସଂଜବେଳକୁ ମୁଁ ଯାଇ ମାନସକୁ ଡାକି ଆଣିବି । ମୋଟେ ବ୍ୟସ୍ତ ହେବା ଦରକାର ନାହିଁ । ମୁଁ ଯାଉଛି– ମୋର ନିତ୍ୟକର୍ମ ସାରିଦେଇ ଆସେ । ତୁ ଯା'– ଗାଧୁଆ ପାଧୁଆ କାମ ଶେଷ କରି ପକା ।'

ସନିଆଁ ଚାଲିଗଲା ପରେ ରତ୍ନପ୍ରଭା କୁଡ଼ିଆ କାନ୍ଥକୁ ଆଉଜି ଚିନ୍ତା ରାଜ୍ୟରେ ହଜିଗଲା । ସେ ଏଠାକୁ ଆସିବା ଦିନରୁ ଭଲକରି ଦିନେ ମୁଣ୍ଡ କୁଣ୍ଡେଇ ପାରିନାହିଁ । ପେଟଭରି ମୁଠାଏ ଖାଇନାହିଁ । ନିଜର ପିନ୍ଧିଥିବା ପୋଷାକଟିକୁ ସଫା କରିନାହିଁ । ମହିଳା ମାଓବାଦୀମାନେ ଯେଉଁ ଜିନିଷ ବ୍ୟବହାର କରୁଥିଲେ, ସେଗୁଡ଼ାକୁ ଅନିଚ୍ଛା ସତ୍ତ୍ୱେ ବ୍ୟବହାର କରୁଥିଲା । ନିଜର ମୋବାଇଲ୍ ଫୋନ୍‌ଟିକୁ କିଏ କେତେବେଳେ କେମିତି ନେଇଯାଇଛି । ସେକଥା ବି ଜାଣି ପାରିନାହିଁ । ଆଜି ସେ ଭଲ କରି ସାବୁନ ଲଗାଇ ଗାଧୋଇବ । ମଇଳା ପୋଷାକକୁ ସଫା କରି ଶୁଖେଇବ । ତେଲ ଲଗେଇ ମୁଣ୍ଡ କୁଣ୍ଡେଇବ । ମାନସ ସହିତ ପ୍ରଥମ ଦେଖାରେ କେମିତି ତାକୁ ସମ୍ଭାଷଣ କରିବ । ତାକୁ ଦେଖି କାନ୍ଦି ପକାଇବ କି ନାହିଁ । ଏଭଳି ଅନେକ କଥା ତା' ମନ ଭିତରେ ପଶି ଘାଣ୍ଟି ଚକଟି ପକାଉଥିଲା ।

ସେ ଦେଖିଲା– ସନିଆଁ ମଉସା ଅଧାବାଟରୁ ଦୌଡ଼ି ଦୌଡ଼ି ଫେରି ଆସୁଛନ୍ତି । କ'ଣ ହେଲା ତାଙ୍କର ? କ'ଣ କିଛି ବିପଦ ପଡ଼ିଲା କି ଶିବିର ଉପରେ ! ନା, ବାଟରେ ମାନସକୁ ଦେଖିଦେବାରୁ ଏମିତି ପାଗଳ ହେଇ ମୋ ପାଖକୁ ଧାଇଁ ଆସୁଛନ୍ତି । ସନିଆଁ ତରବର ହେଇ କୁଡ଼ିଆ ଭିତରକୁ ପଶି ଆସି କୁଡ଼ିଆ କବାଟ ବନ୍ଦକରି ଜଂଜିର ଲଗେଇ ଦେଲା । ଦେହଟା ତା'ର ଭୟରେ ଥରୁଥିଲା ।

ରତ୍ନପ୍ରଭା ଦୌଡ଼ିଯାଇ ସନିଆଁକୁ ଧରି ପକେଇ କହିଲା– କ'ଣ ହେଲା ମଉସା ! ଏମିତି କାହିଁକି ହେଉଚ ?

ସନିଆଁ ଫିସ୍ ଫିସ୍ ହେଇ ରତ୍ନପ୍ରଭାର କାନରେ କହିଲା, 'ପ୍ରତିଶୋଧ ପରାୟଣ ଏସ୍.ଓ.ଜି. ପୁଲିସମାନେ ଶିବିର ପାଖରେ ଆସି ପହଞ୍ଚି ଗଲେଣି । ବାଟରେ ଥିବା ସମସ୍ତ ଗୁପ୍ତଚର ଆଉ ମାଓବାଦୀମାନଙ୍କୁ ସେମାନେ ମାରି ଦେଇଛନ୍ତି । ଏବେ ସର୍ଦ୍ଦାର ରହୁଥିବା ଶିବିର ଉପରେ ଚଢ଼ଉ ଚାଲିବ । ଆମେ କ'ଣ କରିବା ? କେତେବେଳେ କ'ଣ ହେବ କହି ହେଉନାହିଁ । ଶହଶହ ବନ୍ଧୁକଧାରୀ ଏସ୍.ଓ.ଜି. ପୁଲିସ ଗୁପ୍ତ ସୁଡ଼ଙ୍ଗ ଦେଇ ଏ'ଆଡ଼କୁ ମାଡ଼ି ଆସୁଛନ୍ତି । ସେମାନେ କାହାରିକୁ ଛାଡ଼ିବେ ନାହିଁ । ଯାହାକୁ ପାଇବେ ମାରି ପକେଇବେ ।'

ସନିଆଁର କଥା ସରିଛି କି ନାହିଁ । ହଠାତ୍ ଗୁଳି ଗୋଳା ଓ ବୋମା ଫୁଟିବାର ଶବ୍ଦ ଶୁଣାଗଲା । ଭୟଙ୍କର ଶବ୍ଦରେ ଶିବିର ଥରି ଉଠିଲା । ଏଥର ଆଉ ରକ୍ଷାନାହିଁ । ଘନଘନ ଗୁଳି ଫୁଟୁଥିବାରୁ ସନିଆଁ ଆଉ କବାଟ ଖୋଲିଲା ନାହିଁ । କବାଟ ଫାଙ୍କରୁ ସେ ଦେଖି ପାରୁଥିଲା, ସରକାରୀ ପୁଲିସ ଉଗ୍ର ରୂପଧରି ଶିବିର ଭିତରକୁ ପଶି ଗଲେଣି । ଦୁଇଟା ତିନିଟା ଗୁଳି ତାଙ୍କ କୁଡ଼ିଆର କାନ୍ଥ ଆଉ କବାଟରେ ବାଜି ସାରିଲାଣି । ମାଓବାଦୀମାନେ ଜୀବନ ମୂର୍ଚ୍ଛା ବନ୍ଧୁକରୁ ଗୁଳି ଫୁଟେଇ ଆତ୍ମରକ୍ଷା ପାଇଁ ଚେଷ୍ଟା କରୁଛନ୍ତି ।

ରତ୍ନପ୍ରଭା ଘରକୋଣରେ ଥାଇ ତାକୁ କ'ଣ କହୁଥାଏ, ସନିଆଁ ଶୁଣି ପାରୁ ନଥାଏ । ସେ ରତ୍ନପ୍ରଭାକୁ ଚୁପ୍ ରହିବା ପାଇଁ ଆଙ୍ଗୁଳି ଦେଖେଇ ଠାରି ଦେଲା । ସେ ଦେଖିଲା– ଏଥର ସର୍ଦ୍ଦାର ଶିବିର ଉପରେ ଘନ ଘନ ଗୁଳି ବର୍ଷଣ ଚାଲିଛି । ମାଓବାଦୀମାନଙ୍କ ଭିତରୁ ଯେଉଁମାନେ ସତର୍କ ଥିଲେ, ସେମାନେ ସମ୍ମୁଖ ଯୁଦ୍ଧ କରୁଛନ୍ତି । ଅନ୍ୟ ଶିବିର ଆଉ କୁଡ଼ିଆରେ ଥିବା ମାଓବାଦୀମାନେ ଜୀବନ ବିକଳେ ଜଙ୍ଗଲ ଭିତରକୁ ଧାଇଁ ପଳାଇ ଯାଉଛନ୍ତି । ଦଶ ପନ୍ଦର ମିନିଟ୍ ଭିତରେ ସବୁ ଯେମିତି ଛାରଖାର କରିଦେଇ ଏସ୍.ଓ.ଜି. ପୁଲିସ ସି.ଆର୍.ପି.ଏଫ୍. ଆଗକୁ ମାଡ଼ି ଚାଲିଗଲେ । ଏଥର ବଂଧୁକରୁ ଗୁଳି ଶବ୍ଦ ଆଉ ବୋମା ଫାଟିବା ଶବ୍ଦ କମି ଆସିଲା ।

ରତ୍ନପ୍ରଭା ସନିଆଁ ପାଖକୁ ଚାଲି ଆସି ଭୟାତୁର ମନରେ ପଚାରିଲା– 'ମଉସା ! ଏବେ କିଏ କାହାକୁ ମାରୁଥିଲେ ? ମାନସ ଥିବା ଶିବିରକୁ ଗୁଳି ମାଡ଼ ହେଇନାହିଁ ତ ?

ସନିଆଁ ପାଟିରୁ କଥା ବାହାରିଲା ନାହିଁ । ବର୍ତ୍ତମାନ ପରିସ୍ଥିତିରେ ସେ କ'ଣ କରିବ, କିଛି ବୁଝି ପାରିଲା ନାହିଁ । ଧୀରେ କି କବାଟ ଖୋଲି ସେ ପଦାକୁ ବାହାରି ଚାରିଆଡ଼କୁ ଚାହିଁଲା । ଚାରିଆଡ଼େ ଖାଲି ଧୂଆଁ ଆଉ ବାରୁଦ ଗନ୍ଧ । ଶିବିର ଘର ଗୁଡ଼ାକୁ ଧୁ ଧୁ ହେଉ ଜଳୁଛି । ମାଓବାଦୀଙ୍କ ଶବ ଦୁଇଟା କୁଡ଼ିଆ ଆଗ ରାସ୍ତାରେ ପଡ଼ିଛି । ଦଳ ଦଳ ଏସ୍.ଓ.ଜି. ପୁଲିସ ବାହିନୀ ପଛକୁ ପଛ ଲାଗିଛନ୍ତି ।

ସନିଆଁ ଆଗପଛ ନ ବିଚାରି ପଦାକୁ ବାହାରି ପଡ଼ି ଦୁଇହାତ ଟେକି ଠିଆହେଇ ପଡ଼ିଲା । ମା'ଦାନ୍ତୁଆଣି ବଞ୍ଚାଅ ବୋଲି ଉଚ୍ଚସ୍ୱରରେ କହି ପକାଇଲା । ମାଡ଼ି ଆସୁଥିବା ପୁଲିସ ବାହିନୀରୁ ଦୁଇଜଣ ପୁଲିସ ଦୌଡ଼ିଆସି ସନିଆଁ ମୁଣ୍ଡରେ ବନ୍ଧୁକ ଲଗାଇ ରଖିଲେ ।

ରତ୍ନପ୍ରଭା କୁଡ଼ିଆ ଭିତରୁ ବାହାରି ଆସି ସନିଆଁ ପାଖରେ ପହଞ୍ଚିଲା । ଆଉଜଣେ ପୁଲିସ ତା' ମୁଣ୍ଡରେ ବନ୍ଧୁକ ଲଗାଇ ରଖିଲା । ଆଉ କେତେଜଣ ପୁଲିସ କୁଡ଼ିଆ ଭିତରେ ପଶି ଯାଞ୍ଚ କରି ଫେରି ଆସିଲେ । ସନିଆଁ ଆଉ ରତ୍ନପ୍ରଭା ଏଥର ଶରଣାର୍ଥୀ ଭାବରେ ବନ୍ଦୀ ହେଇଗଲେ । ତାଙ୍କ ପରିଚୟ ଜାଣିବାକୁ କାହାରି ହାତରେ ସମୟ ନଥିଲା । ଆଗରୁ ଯାଇଥିବା ଦୁଇ ତିନି ବାଟାଲିୟନ୍ ଏସ୍.ଓ.ଜି. ପୁଲିସ ଓ ସି.ଆର୍.ପି.ଏଫ୍. ମାଓବାଦୀଙ୍କୁ ସଫା କରି କରି ଚାଲିଥିଲେ । ଏମାନେ ଟିକିନିଖି କରି ଯାଞ୍ଚ କରି ଚାଲିଥା'ନ୍ତି ।

ଜଣେ ପୁଲିସ ଅଫିସର ପୁଣିଥରେ ତାଙ୍କ କୁଡ଼ିଆ ଭିତରେ ପଶି ଯାଞ୍ଚ କଲେ । ସେଭଳି କିଛି ବିପଦର ଆଶଙ୍କା ନଦେଖି ପୁଣି ସେ କୁଡ଼ିଆ ଚାରିପଟେ ଦୁଇଥର ବୁଲି ଚାରିଆଡ଼କୁ ଚାହିଁଲେ । ଆଖ ପାଖରେ ଥିବା ବୁଦା ମୂଳକୁ ଭଲ କରି ଯାଞ୍ଚ କଲେ । ଦୁଇଜଣ ସଶସ୍ତ୍ର ପୁଲିସଙ୍କୁ କହିଲେ, 'ଏଇ କୁଡ଼ିଆକୁ ବର୍ତ୍ତମାନ ଆମେ ବିଶ୍ରାମ ସ୍ଥଳ ଭାବରେ ବ୍ୟବହାର କରି ପାରିବା । ଯେଉଁମାନେ ଆତ୍ମ ସମର୍ପଣ କରୁଛନ୍ତି, ସେମାନଙ୍କୁ ଏଇ କୁଡ଼ିଆରେ ଆଣିରଖ । ହଁ, ଯେଉଁ ପୁଲିସ ଆହତ ହେଉଛନ୍ତି, ସେମାନଙ୍କୁ ମଧ ଏଇଠିକି ଆଣି ପ୍ରାଥମିକ ଚିକିତ୍ସା କର । ଡାକ୍ତରବାବୁ ଏଇଠି ରହିବେ ।'

ଏତିକି ଆଦେଶ ଦେଇ ସାରି ପୁଲିସ ଅଫିସର ଆଗେଇ ଚାଲିଲେ । ସନିଆଁ ଆଉ ରତ୍ନପ୍ରଭା ପ୍ରଥମ ଦଫାରେ ସେଇଠି ଆଶ୍ରୟ ନେଲେ । ଦୁଇ ତିନିଜଣ ଏସ୍.ଓ.ଜି. ଯବାନଙ୍କ ଗୋଡ଼ରେ ଆଉ ହାତରେ ଗୁଳି ବାଜିଥିଲା । ସେମାନଙ୍କୁ ସେ କୁଡ଼ିଆକୁ ଅଣାଗଲା । ପୁଲିସ ଡାକ୍ତର ଦଳଙ୍କ ଭିତରୁ ଦୁଇଜଣ ତାଙ୍କର ଚିକିତ୍ସା ଆରମ୍ଭ କରିଦେଲେ ।

ସନିଆଁ ଦେଖୁଥିଲା– ଆହୁରି ଗୋଟାଏ ଏସ୍.ଓ.ଜି. ପୁଲିସ ଦଳ ମାର୍ଚ୍ଚିଂ କରି ସେଇବାଟ ଦେଇ ଆଗେଇ ଚାଲିଛନ୍ତି । ତା'ପଛକୁ ତା'ପଛ ଲାଗିଛି, ପୁଲିସର କମ୍ବିଂ ଅପରେସନ୍ ।

ଦୂରରୁ ଦିଶୁଥିଲା, ଦୁଇଜଣ ଲୋକଙ୍କୁ ପୁଲିସ ଟେକି ଟେକି କୁଡ଼ିଆ ଆଡ଼କୁ ଆଣୁଛନ୍ତି । ସନିଆଁ ମନରେ ଛାନିଆଁ ପଶିଲା– 'ଆମ ମନୁଆଁ ଦେହରେ ଗୁଳି ବାଜି ନାହିଁ ତ' ! ସେ ମା' ଦାନ୍ତୁଆଣିଙ୍କୁ ସ୍ମରଣ କରି ଚାଲିଥାଏ । ଆହତ ଦୁଇଜଣ ମାଓବାଦୀଙ୍କୁ ସେମାନେ କୁଡ଼ିଆ ବାରଣ୍ଡାରେ ରଖିଲେ । ରତ୍ନପ୍ରଭା ବିକଳ ମନରେ ତାଙ୍କ ମୁହଁକୁ ଭଲକରି ଦେଖିନେଲା । ତା' ଭିତରୁ ଜଣେ ଥିଲା ଶିବିର ସର୍ଦ୍ଦାର । ଅନ୍ୟ ଜଣେ ମହେନ୍ଦ୍ର । ଦୁଇଜଣ ଯାକର ପିଣ୍ଡରେ ପ୍ରାଣ ନଥିଲା ପରି ଜଣା ପଡୁଛି ।

ପୁଲିସ ବାହିନୀ ବିଜୟ ଦର୍ପରେ ଆଗେଇ ଚାଲିଛି । ଗୋଟାଏ ପରେ ଗୋଟାଏ ଶିବିର ଧ୍ୱଂସ ପାଇ ଚାଲିଛି । ମାଓବାଦୀମାନେ କିଏ କୁଆଡ଼େ ପଳେଇ ଯାଇଛନ୍ତି । ଯେଉଁମାନେ ସମ୍ମୁଖ ଯୁଦ୍ଧ କରୁଥିଲେ, ସେମାନେ ପ୍ରାଣ ହରେଇ ଏତେତେଣେ ପଡ଼ିଛନ୍ତି । କେତେ ମଲେ, କିଏ କିଏ ମଲେ, ହିସାବ ନେବାକୁ କାହାରି ପାଖରେ ସମୟ ନାହିଁ । ଏବେ ଜଙ୍ଗଲ ଭିତରେ ଗୁଳି ଫୁଟୁଥିବାର ଶବ୍ଦ ଶୁଣାଯାଉଛି । ଜଣା ପଡୁଛି– ପୁଲିସ ବାହିନୀ ମାଓବାଦୀମାନଙ୍କୁ ଗୋଡ଼େଇ ଗୋଡ଼େଇ ହତ୍ୟା କରୁଛନ୍ତି ।

ଏଣେ ମାଓବାଦୀଙ୍କର ଅସ୍ତ୍ର ଭଣ୍ଡାରକୁ ପୁଲିସ ବାହିନୀ ଘେରି ରହିଛନ୍ତି । ସେସବୁ ବର୍ତ୍ତମାନ ପୁଲିସ ଅକ୍ତିୟାରରେ ଅଛି । ଦୁଇତିନି ଘଣ୍ଟା ଧରି ଶିବିର ଆଖ ପାଖରେ ଧ୍ୱଂସର ତାଣ୍ଡବଲୀଳା ଚାଲିଲା । କିଛି ସମୟ ପରେ ବନ୍ଧୁକରୁ ଗୁଳି

ଫୁଟିବା ଶବ୍ଦ କମି କମି ଆସିଲା । କମ୍ବିଂ ଅପରେସନ୍ ଏସ୍.ଓ.ଜି. ପୁଲିସ ବାହିନୀ ଅନେକ ଦୂରକୁ ଚାଲି ଗଲେଣି । ସେମାନେ ଏ' ଜଙ୍ଗଲରେ ଥିବା ସମସ୍ତ ମାଓବାଦୀଙ୍କୁ ନିପାତ କରିବେ ବୋଲି ସ୍ଥିର କରିଛନ୍ତି । ଯୁଦ୍ଧ ଏତେ ଶୀଘ୍ର ଶେଷ ହେବନାହିଁ ।

ଶିବିର ଭିତରୁ ବାହାରୁଥିବା ଧୂଆଁ ଆଉ ଘେରି ରହିଥିବା ବାରୁଦ ଗନ୍ଧ ଟିକେ କମି କମି ଆସିଲାଣି । ସମୟ ଦିନ ତିନିଟା ହେବ । ଚାରିଆଡ଼େ ଶୂନ୍ଶାନ । ଶିବିରଟା ଦିଶୁଛି, ସତେ ଯେମିତି ମହାଭାରତ ଯୁଦ୍ଧର ଶେଷ ଦୃଶ୍ୟ ।

ସନିଆଁ ଆଉ ରତ୍ନପ୍ରଭା ବିକଳ ହେଇ ମାନସ ପାଇଁ ମା' ଦାନ୍ତୁଆଣିଙ୍କୁ ପ୍ରାର୍ଥନା କରିବାରେ ଲାଗିଥା'ନ୍ତି । ସନିଆଁ ମନେ ମନେ କହୁଥାଏ, 'ଛୋଟା କଣା ହେଇଯାଉ ପଛେ, ମୋ ମନୁଆଁ ବଞ୍ଚି ଜୀଇଁକି ରହିଥାଉ । ନହେଲେ ମୋ କୁଳ ବୁଡ଼ିଯିବ ।'

ରତ୍ନପ୍ରଭା ଆଖି ବୁଜି ମନେ ମନେ କହୁଥାଏ, 'ହେ ଭଗବାନ ! ମା' ତାରିଣୀ ! ତମେ ହିଁ ଆମକୁ ଏ ବିପଦ ବେଳେ ଭରସା ହୁଅ । ମୋ ମାନସକୁ ମୋତେ ଫେରେଇ ଦିଅ । ମୋ ପୂର୍ବଜନ୍ମରେ ଯଦି କିଛି ଧର୍ମ ବଳ ଥାଏ, ତାକୁ ଏତିକିବେଳେ ଦିଅ । ମୋ ଆୟୁଷକୁ ନେଇ ମାନସକୁ ଦେଇଦିଅ । ତାକୁ ବଞ୍ଚେଇ ରଖ । ସେ ମାଓବାଦୀଙ୍କର କବଳରେ ଥାଉ ପଛକେ, ତାକୁ ଘଣ୍ଟ ଘୋଡ଼େଇ ଭଲରେ ରଖ ମା' । ମୁଁ ଜଣେ ଅସହାୟ ବାଳିକା । କାନି ପତେଇ ତୋ' ପାଖରେ ମାନସର ଜୀବନ ଭୀକ୍ଷା କରୁଛି– ମା' ତାରିଣୀ ।'

ସେମାନେ ଦେଖିଲେ ପୁଣି ଦଳେ ପୁଲିସ ତାଙ୍କ କୁଡ଼ିଆ ଆଡ଼କୁ ମାଡ଼ି ଆସୁଛନ୍ତି । ସନିଆଁ ମନରେ ପୁଣି ଆଶଙ୍କା ଜାଗ୍ରତ ହେଲା । ମନୁଆଁ ଆହତ ହେଇ ଧରା ପଡ଼ି ଯାଇନାହିଁ ତ ! ରତ୍ନପ୍ରଭା ବିକଳ ମନରେ ସେହି ଆଡ଼କୁ ଅପଲକ ଦୃଷ୍ଟିରେ ଚାହିଁ ରହିଥାଏ । ଦୁଇହାତକୁ ଉପରକୁ ଟେକି ଦୁଇଜଣ ଯୁବକ ଚାଲି ଆସୁଥିବାର ସେମାନେ ଦେଖିଲେ । ସେମାନଙ୍କୁ ସଶସ୍ତ୍ର ପୁଲିସ ବଂଧୁକ ଦେଖାଇ ଚାଲିଛନ୍ତି । ସେମାନଙ୍କ ଦେହରେ କିଛି ପୋଷାକ ନାହିଁ ।

ଅଣ୍ଟାରେ କେବଳ ଖଣ୍ଡିଏ ଲେଖାଁ ଗାମୁଛା । ଏମାନେ ପୁଣି କିଏ ? ଏମିତି ଅବସ୍ଥାରେ ଏମାନେ ଧରା ପଡ଼ିଲେ କେମିତି ? ସମସ୍ତଙ୍କ ମନରେ ପ୍ରଶ୍ନ ।

ସନିଆଁ ତାକୁ ଠିକ୍ ଚିହ୍ନି ପାରିଲା– ତାଙ୍କ ଭିତରୁ ଜଣେ ହେଉଛି, ମନୁଆଁ । ସେ ଠିକ୍ ଅନୁମାନ କରି ନେଲା, ମନୁଆଁ ଡେରିରେ ଉଠି ନିତ୍ୟକର୍ମ ସାରିବାକୁ ଝରଣା ଆଡ଼କୁ ଯାଇଥିଲା । ପୁଲିସ ବାହିନୀଦ୍ୱାରା ତ ଶିବିର ଧ୍ୱଂସ ପାଇ ଯାଇଛି । ତା' ଭିତରେ ଯେଉଁମାନେ ଥିଲେ, ସେମାନେ ନିଶ୍ଚୟ ପୋଡ଼ି ଜଳି ଯାଇଥିବେ । ସେ ହାତଯୋଡ଼ି ମା'ଙ୍କ ନିକଟରେ କୃତଜ୍ଞତା ଜଣାଇଲା । ତା' ସହିତ ତା'ର ସହକର୍ମୀ ଯୁବକଟି ମଧ୍ୟ ଡେରିରେ ବିଛଣା ଛାଡ଼ି ନିତକର୍ମ କରିବାକୁ ଯାଇଥିବାରୁ ଜୀବନ ରକ୍ଷା କରି ପାରିଛି ।

ରତ୍ନପ୍ରଭା ଯୁବକ ଦୁଇଜଣଙ୍କୁ ଦେଖି ଚିହ୍ନି ପାରିଲା । ସେତେବେଳେ ଯେଉଁ ଦୁଇଜଣ ଯୁବକଙ୍କୁ ସେ ଦୂରରୁ ଦେଖିଥିଲା । ଏ' ଦୁଇଜଣ ତ ସେହିମାନେ । ଲମ୍ବା ନାକ, ସିଂହ ଠାଣି ଆଉ ଅଳ୍ପ ଦାଢ଼ୀ ରଖିଥିବା ଯୁବକଟି ତା'ର ପ୍ରିୟ ମାନସ । ଏଥିରେ ତା'ର କୌଣସି ସନ୍ଦେହ ରହିଲା ନାହିଁ । ତା' ଆଖିରୁ ଦି'ଟୋପା ଲୁହ ବହିଯାଇ ଠପ୍ ଠପ୍ କରି ତଳେ ପଡ଼ିଗଲା । ସେ ଆଖି ବୁଜି ଦେଇ ଦାନ୍ତୁଆଣି ମାଆଙ୍କ ପାଦତଳେ କୃତଜ୍ଞତା ଜଣାଇଲା ।

ବଂଧୁକଧାରୀ ପୁଲିସ ସେ ଦୁଇଜଣ ଯୁବକଙ୍କୁ କୁଡ଼ିଆ ଭିତରକୁ ଯିବାକୁ ଆଦେଶ ଦେଲେ ।

ଭଗବାନଙ୍କର କି ବିଚିତ୍ର ଲୀଳା । ଗୋଟାଏ ଅଘଟଣ ଆଉ ଅପ୍ରୀତିକର ପରିସ୍ଥିତିରେ ଧ୍ୱଂସର ପାଉଁଶ ଗଦା ଭିତରେ ମାନସ ଆଉ ରତ୍ନପ୍ରଭାଙ୍କର ଅପୂର୍ବ ମିଳନ ଘଟିଲା । ଦୁହିଁଙ୍କର ଆଖିପତା ପଡୁନାହିଁ । ଦୁହେଁ ଦୁହିଁଙ୍କୁ ଏକ ଅପୂର୍ବ ଭଙ୍ଗୀରେ ଚାହିଁ ରହିଛନ୍ତି । କାହାରି ତୁଣ୍ଡରୁ ଭାଷା ଫିଟୁନାହିଁ । ଦୁହିଁଙ୍କର ଇଚ୍ଛା ହେଉଛି– ପରସ୍ପରକୁ କୁଣ୍ଢେଇ ଧରି ମନଭରି କାନ୍ଦି ଚାଲନ୍ତେ ।

ସନିଆଁ ଦୁଇପାଦ ଆଗେଇ ଯାଇ ମନୁଆକୁ ଛାତି ଆଡ଼କୁ ଟାଣି ଆଣିଲା । ଛୋଟ ପିଲାଟି ପରି ମନୁଆ ବାପାଙ୍କ ଛାତିରେ ମୁହଁକୁ ଜାକି ନିରବରେ ଲୁହ ଢାଳୁଥିଲା । ସେ ଦୃଶ୍ୟକୁ ଦେଖି ରତ୍ନପ୍ରଭା ସହି ପାରିଲା ନାହିଁ । ସେ ମନୁଆଁ ପାଖକୁ ଲାଗିଯାଇ ମୁଣ୍ଡ ତଳକୁ କରି ଠିଆ ହେଲା । ସନିଆଁ ତା' ମନକଥାକୁ ବୁଝି ପାରିଲା । ସେ ମନୁଆଁକୁ ବାହୁ ବନ୍ଧନରୁ ମୁକ୍ତିଦେଇ ରତ୍ନପ୍ରଭାର ହାତକୁ ଆଣି ତା' ହାତରେ ଧରେଇ ଦେଇ କହିଲା– 'ବାବୁରେ ! ମୋ ଦାୟିତ୍ୱ ଏବେ ସରିଗଲା । ରତ୍ନପ୍ରଭାର ଦାୟିତ୍ୱ ଏବେ ତୋ'ର । ତା' ସହିତ ଦି'ପଦ କଥା ଆଗ ହେଇ ଯା' । ବିଚାରୀ ବଡ଼ ଦୁଃଖୀ ଝିଅଟିଏ । ବହୁତ କଷ୍ଟ ସହି ସାରିଲାଣି ମୋ ମାଆଟା ।'

ମାନସ ଏକ ଲୟରେ ରତ୍ନପ୍ରଭାକୁ ଚାହିଁ ରହିଥିଲା । ସେ ଆଉ କୋହ ସମ୍ଭାଳି ନପାରି ତାକୁ ଜାବୁଡ଼ି ଧରି ପକେଇଲା । ରତ୍ନପ୍ରଭା ତା' ବାହୁ ବନ୍ଧନରେ ନିଜକୁ ହଜେଇ ଦେଲା । ସେ ଆନନ୍ଦରେ ଅତ୍ୟଧିକ ଅଧୀର ହେଇ ପଡ଼ିଥିଲା ସତ; କିନ୍ତୁ କୌଣସି ଉତ୍ତେଜନା ନଥିଲା । ଦୁହିଁଙ୍କ ଆଖିରୁ କେବଳ ଧାର ଧାର ଲୁହ ବହି ଚାଲିଥିଲା । ଦୁହେଁ ଦୁହିଁଙ୍କ ବନ୍ଧନରୁ ମୁକ୍ତି ପାଇବାକୁ ଚାହୁଁ ନଥିଲେ । ଏଭଳି ବିରଳ ଦୃଶ୍ୟକୁ ଉପସ୍ଥିତ ପୁଲିସମାନଙ୍କ ସହିତ ସନିଆଁ ବି ଉପଭୋଗ କରୁଥିଲା ।

ଧୀରେ ଧୀରେ ସେମାନେ ପ୍ରକୃତିସ୍ଥ ହେଲେ । ରତ୍ନପ୍ରଭା ସରମିଯାଇ ମୁହଁ ତଳକୁ କରି ଭାବୁଥିଲା– 'ମୁଁ ମାନସକୁ ଭଲ ପାଏ । ତା' ସଙ୍ଗେ କେତେ ମଜା କଥା ହେଇଛି । ଅତୀତରେ ତା' ସହିତ ନିଜ ବାହାଘର ପ୍ରସ୍ତାବରେ ଅନେକ ଥର କଥା ହେଇଛି । ଏକା ସଙ୍ଗରେ ମିଶି ବିଭିନ୍ନ ପ୍ରୋଜେକ୍ଟ କରିଛି । ତା' ହାତରେ ହାତ ମିଳେଇଛି । କିନ୍ତୁ ଏଭଳି କେବେ ତା'ର ବାହୁ ବନ୍ଧନରେ ବାନ୍ଧି ହେଇ ପାରି ନଥିଲି । ମାନସ ଗୋଟାଏ ଦୀର୍ଘଶ୍ୱାସ ପକାଇଲା । ତା' ସହିତ ଆସିଥିବା ମାଓବାଦୀ ଯୁବକଟି ବୋକାଙ୍କଭଳି ସମସ୍ତଙ୍କୁ ଚାହିଁ ରହିଥାଏ ।



ବିପରୀତ ଦିଗରୁ ଦଳେ ଏସ୍.ଓ.ଜି. ପୋଲିସ୍ ମାର୍ଚ୍ଚିଂ କରି କରି ଫେରୁଥିଲେ । ସେମାନେ ସୂଚନା ଦେଲେ । ଅସଂଖ୍ୟ ଦୁର୍ଦ୍ଦାନ୍ତ ମାଓବାଦୀ ଏନ୍‌କାଉଣ୍ଟରରେ ମୃତ୍ୟୁବରଣ କରିଛନ୍ତି । କିନ୍ତୁ ତାଙ୍କର ସାଥିମାନେ ତାଙ୍କର ଶବକୁ ନେଇ ପଳାଇଛନ୍ତି । ଆଉ କେତେକ ମାଓବାଦୀ ଅସ୍ତ୍ରଶସ୍ତ୍ର ଛାଡ଼ି ଜୀବନ ବିକଳେ ଜଙ୍ଗଲ ଭିତରକୁ ପଳାଇ ଯାଇଛନ୍ତି । ସେମାନଙ୍କୁ ଧରିବା ଉଦ୍ଦେଶ୍ୟରେ ଦୁଇ ପ୍ଲାଟୁନ୍ ଏସ୍.ଓ.ଜି. ବାହିନୀ ଖାନ୍ ତଲାସି ଚଳାଇଛି । ଯେଉଁମାନେ ଆତ୍ମ ସମର୍ପଣ କରିଛନ୍ତି କିମ୍ବା ଆହତ ହେଇଛନ୍ତି, ସେମାନଙ୍କୁ ତୁରନ୍ତ କେନ୍ଦୁଝର ହେଡ୍ କ୍ୱାର୍ଟରକୁ ନିଆଯିବ । ସେଇଠି ତାଙ୍କ କଥା ବିଚାର କରାଯିବ । ଆବଶ୍ୟକ ସ୍ଥଳେ ସେମାନଙ୍କୁ ଥଇଥାନ କରାଯିବ ।

ପୁଲିସ ଗାଡ଼ି ଆସି କୁଡ଼ିଆ ଦୁଆରେ ଠିଆହେଲା । ସନିଆଁ, ମନୁଆଁ, ରତ୍ନପ୍ରଭା ସହିତ ଆହତ ଓ ବନ୍ଦୀ ହୋଇଥିବା ମାଓବାଦୀମାନେ ଗାଡ଼ିରେ ଚଢ଼ିଲେ ।

○

# ଚଉଦ

ପୁଲିସ ଗାଡ଼ିରେ ଚଢ଼ିବା ପରେ ରତ୍ନପ୍ରଭା ପାଖରେ ବସିଲା– ମାନସ । ତା' ପାଖରେ ସନିଆଁ । ତିନିଜଣ ଚାହୁଁଥା'ନ୍ତି, ଟିକେ ସୁଯୋଗ ମିଳିଗଲେ, ନିଜ ମନ କଥାଗୁଡ଼ାକ କହି ପକାନ୍ତେ । ଅନ୍ୟର କଥା ପଚାରି ବୁଝି ପକାନ୍ତେ । କିନ୍ତୁ ଉପସ୍ଥିତ ପୁଲିସ ଅଫିସର ଆଉ କର୍ମଚାରୀ ତଥା ଅନ୍ୟ ଆହତ ଓ ବନ୍ଦୀ ମାଓବାଦୀଙ୍କ ଉପସ୍ଥିତି ସେମାନଙ୍କୁ କଥାବାର୍ତ୍ତା କରେଇ ଦେବାରେ ପ୍ରତିବନ୍ଧକ ହେଉଥାଏ । ଗାଡ଼ି ଷ୍ଟାର୍ଟ କରିବା ପୂର୍ବରୁ ପୁଲିସ ଅଫିସର ଜଣକ ହେଡ଼୍‌କ୍ୱାର୍ଟର ସହିତ ମୋବାଇଲ ଫୋନ୍‌ରେ କଥା ହେଲେ । ତା'ପରେ ସେ ମାନସ ଓ ରତ୍ନପ୍ରଭାଙ୍କୁ ତାଙ୍କର ସଂପର୍କ କ'ଣ ବୋଲି ପଚାରିଲେ । ଆଗ ରତ୍ନପ୍ରଭା ନିଜର ପରିଚୟ ଦେଇଦେଲା ।

ଡାକ୍ତର ମିଶ୍ରଙ୍କ ଝିଅ ରତ୍ନପ୍ରଭା କିଛିଦିନ ତଳେ ମାଓବାଦୀଙ୍କ ଦ୍ୱାରା ଅପହୃତ ହୋଇଥିବା କଥା ସେ ଶୁଣିଥିଲେ । ସେ ତାକୁ ଆଜି ଉଦ୍ଧାର କରି ପାରିଛନ୍ତି, ଏଇଟା ତାଙ୍କପାଇଁ କମ୍ ବଡ଼ ଗୌରବର କଥା ନୁହେଁ । ସେ ତୁରନ୍ତ ଡକ୍ଟର ମିଶ୍ରଙ୍କୁ ତାଙ୍କ ଝିଅ ବିଷୟରେ ଶୁଭ ସମ୍ବାଦଟା ଦେବାପାଇଁ ଆଗ୍ରହୀ ହୋଇ ପଡ଼ିଲେ । ରତ୍ନପ୍ରଭା ହାତକୁ ମୋବାଇଲ୍ ଫୋନ୍ ଦେଇ ତା' ବାପାଙ୍କ ସହିତ କଥା ହେବାକୁ କହିଲେ ।

ଫୋନ୍‌ଟା ଧରିଲେ ରତ୍ନପ୍ରଭାର ମାଆ । ଏତେଦିନ ପରେ ସେ ଝିଅର କଣ୍ଠସ୍ୱର ଶୁଣିପାରି ନିଜ କାନକୁ ବିଶ୍ୱାସ କରି ପାରିଲେ ନାହିଁ । 'ମୁଁ ପୁଲିସ ଗାଡ଼ିରେ ମାନସ ଓ ମାନସର ବାପାଙ୍କ ସହିତ ବର୍ତ୍ତମାନ କେନ୍ଦୁଝର ଯିବାକୁ ବାହାରିଛି । ସନ୍ଧ୍ୟା ସୁଦ୍ଧା ଆମେ କେନ୍ଦୁଝର ହେଡ୍ କ୍ୱାର୍ଟରରେ ପହଞ୍ଚିଯିବୁ । ତମେ ସେଇଠିକି ଆସ କଥା ହେବା' ।

ରତ୍ନପ୍ରଭା ଫୋନ୍ କାଟିଦେଇ ପୋଲିସ୍ ଅଫିସରଙ୍କ ହାତକୁ ଦେଇଦେଲା । ମାନସର ପରିଚୟ ପାଇ ତାକୁ ମଧ୍ୟ ଫୋନ୍‌ଟିଏ କରିବାକୁ ସୁଯୋଗ ଦେଲେ । ମାନସ ଫୋନ୍‌ଟିକୁ ଧରି ତାଙ୍କ ଗାଆଁର ସରପଞ୍ଚ ଶଙ୍କର ମୁଣ୍ଡା ସହିତ କଥା

ହେଲା । ସଂକ୍ଷେପରେ ସେ ଜଣାଇଦେଲା– କେନ୍ଦୁଝରର ଏସ୍.ପି. ଅଫିସ୍‌କୁ ସନ୍ଧ୍ୟାରେ ଆସି ତା' ସହିତ ଭେଟିବାକୁ ଅନୁରୋଧ କଲା ।

ଶଙ୍କର ମୁଣ୍ଡା ଏହା ଭିତରେ ମାନସକୁ ଶୁଭ ଖବରଟିଏ ଦେବାପାଇଁ ସୁଯୋଗ ଖୋଜୁଥିଲା । ସେ ତରବର ହେଇ ଜଣେଇଦେଲା– 'ତୁ ଯେଉଁ ଇଣ୍ଟରଭ୍ୟୁ ଦେଇଥିଲୁ । ତା'ର ରେଜଲ୍ଟ ବାହାରିଛି । ମିଲିଟାରୀ ଅଫିସର ଭାବେ ତତେ ଏଇ ମାସ ଶେଷ ସୁଦ୍ଧା ଡେରାଡୁନ୍‌ରେ ଯୋଗଦେବାକୁ ଚିଠି ଆସିଛି । ମୁଁ ସେ ଚିଠିଟାକୁ ନେଇକି ଯିବି । ହଉ ତୁ ଫେରି ଆସିଲୁ, ସେଇଟା ଆମପାଇଁ ବଡ଼ କଥା । ଆମ ଗାଁ'ରେ ଏ' ଖବରଟା ଏବେ ଦେଇଦେବି ।'

ଫୋନ୍‌ଟିକୁ ବଢ଼େଇ ଦେଇ ମାନସ ପୁଲିସ ଅଫିସରଙ୍କୁ ଧନ୍ୟବାଦ ଜଣାଇ, ତା'ର କମିଶନିଂ ଅଫିସର ପଦବୀ ନିଯୁକ୍ତି ପତ୍ର ମିଳିଥିବା କଥା, ସୂଚନା ଦେଇଦେଲା । ଏହି ଖବର ପାଇ ଉପସ୍ଥିତ ସନିଆଁ ଏବଂ ରତ୍ନପ୍ରଭାଙ୍କ ମୁହଁରେ ହାଲୁକା ହସ ଖେଳିଗଲା । ଅନ୍ୟମାନେ ଅନ୍ୟମନସ୍କ ହେଇ ପଡ଼ିଲେ ।

ସନ୍ଧ୍ୟା ସାତଟାରେ ପୁଲିସ ଗାଡ଼ି କେନ୍ଦୁଝରର ଏସ୍.ପିଙ୍କ ଅଫିସ୍ ଆଗରେ ଠିଆ ହେଲା ।

କେନ୍ଦୁଝର ସହରର ମଝାମଝିରେ ଥିବା କେନ୍ଦୁଝରର ରାଜାଙ୍କର ପୁରୁଣା ଦରବାର ହଲ୍ ଏବେ ଜିଲ୍ଲାପାଳ ଓ ପୁଲିସ୍ ଅଧୀକ୍ଷକଙ୍କ କାର୍ଯ୍ୟାଳୟରେ ରୂପାନ୍ତରିତ ହୋଇଛି । ମର୍ଯ୍ୟାଦା ସଂପନ୍ନ ସୁନ୍ଦର ରାଜଦରବାର ଆଗରେ ଅଳ୍ପ କେତେଟା ଗାଡ଼ି ସହିତ ଅସଂଖ୍ୟ ଲୋକ ଜମା ହେଇଥିଲେ । ସେମାନେ ରତ୍ନପ୍ରଭାକୁ ଧରି ଫେରୁଥିବା ପୁଲିସ ଭ୍ୟାନ୍‌କୁ ଅପେକ୍ଷା କରିଥିଲେ ।

ଡାକ୍ତର ମିଶ୍ର ନିଜେ ଫୋନ୍‌ଟାକୁ ଧରିଥିଲେ, ଅଧିକ କିଛି ପଚାରି ବୁଝି ପାରିଥା'ନ୍ତେ । ସେ ବାଥ୍‌ରୁମ୍‌ରେ ଥିବା ସମୟରେ ଶ୍ରୀମତୀ ମିଶ୍ର ଫୋନ୍‌ରେ କ'ଣ ତା' ସହିତ କଥାହେଲେ କେଜାଣି, ତାଙ୍କର ସୂଚନାଟା ତାଙ୍କୁ ଅସଂପୂର୍ଣ୍ଣ ଲାଗୁଥିଲା । ସେ ବ୍ୟସ୍ତ ହେଇ ଗାଡ଼ିର ଚାରିପଟେ ଦି'ଘେରା ବୁଲି ସାରିଲେଣି । ଅସଜଡ଼ା ଲୁଗାପଟାକୁ ହାତରେ ଧରି ଶ୍ରୀମତୀ ମିଶ୍ର ତାଙ୍କ ପଛେ ପଛେ ଦୌଡ଼ୁଛନ୍ତି । ସେ ଆଗରୁ ସ୍ୱାମୀଙ୍କୁ ସତର୍କ କରି କହି ଦେଇଛନ୍ତି, 'ରତ୍ନାକୁ ଲୋକଙ୍କ ସାମନାରେ

ଏଣୁତେଣୁ କିଛି କଥା ପଚାରିବ ନାହିଁ । ସିଏ ଯାହାକୁ ଠିକ୍ କରିଛି, ଯିଏ ତା' ପାଇଁ ଜୀବନକୁ ପାଣି ଛଡ଼େଇ ମାଓବାଦୀ ଘେର ଭିତରେ ପଶିଛି, ସେହି ମାନସ ସହିତ ମୁଁ ତା'ର ବାହାଘର କରିଦେବି । ତମେ ଏଥିରେ ପ୍ରତିବନ୍ଧକ ସୃଷ୍ଟି କରିବ ନାହିଁ । ସେ ମୋ ଝିଅ । ମୁଁ ତା'ର ମନକଥା ଜାଣିଛି । ସେ ଅନ୍ୟମାନଙ୍କ ଭଳି ବୋକୀ ହାଉଡ଼ି ଝିଅ ନୁହଁ ଯେ ଅପଦାର୍ଥଟାକୁ ନିଜର ଜୀବନ ସାଥୀ ଭାବରେ ବାଛିଥିବ । ମୁଁ ଯାହା କହିବି, ସେଇଥିରେ ତମେ ଖାଲି ହଁ ମାରିବ ।'

ଆଜି ବଡ଼ି ସକାଳୁ ଡକ୍ଟର ମିଶ୍ର ସପରିବାର ତାରିଣୀ ମାଆଙ୍କୁ ଦର୍ଶନ କରିବା ପାଇଁ ଘଟଗାଁକୁ ଯାଇଥିଲେ । ସେ ଦୁହେଁ ସାରାଦିନ ମାଆଙ୍କ ଆଗରେ ବସି ହାତଯୋଡ଼ି ଲୁହ ଢାଳୁଥିଲେ । ସତରେ ମାଆ ତାରିଣୀ କେଡ଼େ କରୁଣାମୟୀ । ସେ ତ୍ୱରିତ ସୁରକ୍ଷା ଦେଇ ସନ୍ଧ୍ୟା ସୁଦ୍ଧା ତାଙ୍କର ଅଲିଅଳୀ ଝିଅ ରତ୍ନାକୁ ମୁକ୍ତି କରିଦେଲେ । ସାହି ପଡ଼ିଶା ଲୋକେ ଏକଥା ସେଠି କୁହାକୁହି ହେଉଥିଲେ ।

ଡାକ୍ତର ମିଶ୍ର ତାଙ୍କର ଓକିଲ ବଂଧୁ ମହାପାତ୍ରଙ୍କୁ ଫୋନ୍ କରିଥିଲେ । ତାଙ୍କୁ ଏସ୍.ପି. ଅଫିସ୍‌କୁ ଆସିବାକୁ ଅନୁରୋଧ କରିଥିଲେ । ସେ ତାଙ୍କ କିରାଣୀ ସହିତ ତାଙ୍କ ପାଖରେ ଥିବା ଚିଠି ଓ ଫଟୋଗୁଡ଼ିକ ଧରି ଗୋଟାଏ କଡ଼ରେ ଠିଆ ହେଇଥା'ନ୍ତି ।

ନୂଆସାହି ମୁଣ୍ଡାସାହିର ଟୋକାମାନେ ମୋଟରେ ସାଇକେଲରେ ଆସି ଗୋଟାଏ ପଟରେ ଠିଆ ହେଇଥା'ନ୍ତି । ଶଙ୍କର ଆଉ ଚନ୍ଦୁ ପରିସ୍ଥିତିକୁ ଲକ୍ଷ୍ୟକରି ଗାଡ଼ି ଭିତରେ ଥିବା ତାଙ୍କର ସନିଆଁ ଭାଇକୁ ଦେଖୁଥିଲେ ।

ସମସ୍ତଙ୍କ ମନରେ ଥିବା ଉଦ୍‌ବେଗକୁ ଭାଙ୍ଗିଦେଇ ପୁଲିସ କର୍ଡ଼ନରେ ଆଗ ରତ୍ନପ୍ରଭା, ତା'ପରେ ମାନସ, ସନିଆଁ ଓହ୍ଲେଇ ସିଧା ଅଫିସ୍ ଭିତରକୁ ଗଲେ । ଟିକେ ପରେ ଅନ୍ୟମାନଙ୍କୁ ଓହ୍ଲେଇ ପୁଲିସ ଅଲଗା ଗୋଟାଏ ଘରେ ବସେଇଦେଲେ । କାହାରିକୁ ଭିତରକୁ ଛଡ଼ା ଗଲାନାହିଁ । ବାହାରେ ଅପେକ୍ଷା କରିଥିବା ଲୋକମାନଙ୍କର ଉତ୍କଣ୍ଠା ବଢ଼ି ବଢ଼ି ଚାଲିଥାଏ । ପୁଲିସମାନେ ଲୋକମାନଙ୍କୁ କିଛି ଦୂରକୁ ଚାଲି ଯିବାକୁ ଅନୁରୋଧ କରୁଥା'ନ୍ତି । ଚାହୁଁ ଚାହୁଁ କ୍ୟାମେରା ଧରି ସାମ୍ବାଦିକ ଗୋଷ୍ଠୀ ଆଗକୁ ମାଡ଼ି ଆସିଲେ । ସେମାନଙ୍କ ସାମନାକୁ ଆସି ଆରକ୍ଷୀ ଅଧୀକ୍ଷକ ସୂଚନା

ଦେଲେ, 'କେନ୍ଦୁଝର-ଯାଜପୁର ବର୍ଡ଼ରକୁ ଲାଗିଥିବା କଣ୍ଡାର ଜଙ୍ଗଲରେ ଥିବା ମାଓବାଦୀଙ୍କ ଆଡ୍ଡାସ୍ଥଳୀ ଏବଂ ପ୍ରଶିକ୍ଷଣ ଶିବିର ଗୁଡ଼ିକୁ କମ୍ବିଂ ଅପରେସନ୍ ମାଧ୍ୟମରେ ଆମର ଏସ୍.ଓ.ଜି., ସି.ଆର୍.ପି.ଏଫ୍ ଓ ଜିଲ୍ଲା ପ୍ରଶାସନର ମିଳିତ ଅଭିଯାନ ଧ୍ୱଂସ କରି ଦିଆଯାଇଛି । ଅନେକ ମାଓବାଦୀ ଆହତ ହୋଇଛନ୍ତି । କେତେଜଣ ମୃତ୍ୟୁବରଣ କରିଛନ୍ତି, ତା'ର ହିସାବ ଦିନେ ଦୁଇଦିନ ମଧ୍ୟରେ ଜଣା ପଡ଼ିଯିବ । ଆମର ପୁଲିସ ବାହିନୀ ଏବେ ବି କମ୍ବିଂ ଅପରେସନ୍‌ରେ ବ୍ୟସ୍ତ ଅଛନ୍ତି । ହରିଚନ୍ଦନପୁର ଜଙ୍ଗଲରେ ଏବେ ବି ଗୁଳିଗୁଳା ବିନିମୟ ଚାଲିଛି । ଚାରିଜଣ ମାଓବାଦୀ ମେମ୍ବର ଆତ୍ମ ସମର୍ପଣ କରିଛନ୍ତି । ସେମାନଙ୍କୁ ଆମେ ଉପଯୁକ୍ତ ପୁରସ୍କାର ଦେଇ ଥଇଥାନର ବ୍ୟବସ୍ଥା କରିବୁ । ତା' ପୂର୍ବରୁ କେତୋଟି ଅଫିସିଆଲ ପ୍ରୋସେସିଂ କାମ ସାରିବାକୁ ପଡ଼ିବ । ମୁଁ ସର୍ବସାଧାରଣଙ୍କୁ ଅନୁରୋଧ କରୁଛି, ଆପଣମାନେ ଶାନ୍ତ ରୁହନ୍ତୁ । ଧୈର୍ଯ୍ୟର ସହିତ ଅପେକ୍ଷା କରନ୍ତୁ । ଆମକୁ ଏହି କାର୍ଯ୍ୟରେ ସହଯୋଗ କରନ୍ତୁ । ପ୍ରଥମ ଦଫାରେ ଯେଉଁମାନେ ଆମ ସହିତ ହେଡ୍ କ୍ୱାର୍ଟରକୁ ଆସିଛନ୍ତି, ସେମାନଙ୍କ ଭିତରେ ଡାକ୍ତର ମିଶ୍ରଙ୍କ ଝିଅ ରତ୍ନପ୍ରଭା ଓ ସନାତନ ମୁଣ୍ଡାଙ୍କ ପୁଅ ମାନସ ବି ଅଛନ୍ତି । ସେମାନଙ୍କ ଇଚ୍ଛା ନିଶ୍ଚୟ ପୂରଣ କରାଯିବ ବୋଲି ପୁଲିସ ପ୍ରଶାସନ ତରଫରୁ ମୁଁ ପ୍ରତିଶ୍ରୁତି ଦେଉଛି ।'

ସାମ୍ବାଦିକମାନଙ୍କୁ ଏତିକି କହିସାରି ଆରକ୍ଷୀ ଅଧୀକ୍ଷକ ମହାଶୟ ତାଙ୍କ ଅଫିସ୍ ଭିତରକୁ ପଶିଗଲେ । ଡାକ୍ତର ମିଶ୍ରଙ୍କୁ ଭିତରକୁ ଡକାଗଲା ।

ଗାମୁଛା ପିନ୍ଧି ଠିଆ ହେଇଥିବା ମାନସକୁ ଦେଖି ସେ ଆଉ ଧୈର୍ଯ୍ୟ ଧରି ରହି ପାରିଲେ ନାହିଁ । ତୁରନ୍ତ ସେ ଡ୍ରାଇଭରକୁ କହି ଘରୁ ଭଲ ସାର୍ଟ ପ୍ୟାଣ୍ଟ ହଳେ ମଗେଇ ଆଣି ତାକୁ ପିନ୍ଧିବାକୁ ଦେଲେ । ରତ୍ନପ୍ରଭା ପାଇଁ ସେ ଆଗରୁ ନୂଆ ଡ୍ରେସ୍ ହଳେ ଧରି ଆସିଥିଲେ । ସେମାନଙ୍କୁ ପୋଷାକ ବଦଳେଇ ଦେବାପାଇଁ ପୁଲିସକୁ ଅନୁରୋଧ କଲେ ।

କେତେକ ଅଫିସ୍ କାଗଜପତ୍ର କାମ ଜୋର ସୋର୍‌ରେ ଚାଲିଥାଏ । ଶ୍ରୀମତୀ ମିଶ୍ର ଭିତରକୁ ଯାଇ ନପାରି ମନଦୁଃଖରେ ଲୁହ ଢାଳୁଥା'ନ୍ତି । ଶେଷରେ ଶ୍ରୀମତୀ ମିଶ୍ରଙ୍କୁ ଡକାଗଲା । ଡାକ୍ତର ମିଶ୍ର ଓ ଶ୍ରୀମତୀ ମିଶ୍ର ତାଙ୍କର ଓକିଲ ବନ୍ଧୁ ମହାପାତ୍ର

ବାବୁଙ୍କୁ ଭିତରକୁ ଆସିବାକୁ ଅନୁମତି ପାଇଲେ । ସମସ୍ତଙ୍କ ସହମତିରେ ସନାତନ ମୁଣ୍ଡା ଓ ଡାକ୍ତର ମିଶ୍ର କେତୋଟି ଫର୍ମରେ ଦସ୍ତଖତ କଲେ । ଓକିଲବାବୁ ସାକ୍ଷୀ ପଡ଼ିଲେ । ସରକାରଙ୍କ ତରଫରୁ ଘୋଷଣା କରାଯାଇଥିବା ଅର୍ଥରାଶିକୁ ମାନସ ଓ ରତ୍ନାର ବାହାଘରରେ ଖର୍ଚ୍ଚ କରାଯିବ ବୋଲି ସ୍ଥିର ହେଲା ।

ରତ୍ନା ସହିତ ମାନସ ଓ ଅନ୍ୟମାନେ ପଦାକୁ ବାହାରିଲେ । ଶହ ଶହ ଦର୍ଶକ ସେମାନଙ୍କୁ ଫୁଲମାଳ ଦେଇ ଅଭିନନ୍ଦନ ଜଣେଇଲେ । ଶଙ୍କର ମୁଣ୍ଡା ଭିଡ଼ ଭିତରୁ



ବାହାରି ଆସି ମାନସ ହାତରେ ଖଣ୍ଡିଏ କାଗଜ ବଢ଼େଇ ଦେଲା । ସେ ତରବର ହେଇ ତା' ଉପରେ ଆଖି ବୁଲେଇ ଆଣି ଡାକ୍ତର ମିଶ୍ରଙ୍କ ହାତକୁ ବଢ଼େଇ ଦେଲା । ଡାକ୍ତର ମିଶ୍ର ମାନସର ପୋଷ୍ଟିଂ ଅର୍ଡ଼ରକୁ ଦେଖି ଆନନ୍ଦରେ ତାକୁ କୁଣ୍ଢେଇ ପକେଇଲେ ।

ସମସ୍ତଙ୍କୁ ଜଣେଇ ଦିଆଗଲା, ମାନସ ଓ ରତ୍ନପ୍ରଭାର ବାହାଘର ଏଇଠି ହେବ । କନ୍ୟାଦାନ କରିବେ ନିଜେ ପୁଲିସ୍ ଆରକ୍ଷୀ ଅଧୀକ୍ଷକ । ତାଙ୍କ ତତ୍ତ୍ୱାବଧାନରେ ବାହାଘର କାମ ସବୁ ହେବ । ଝିଅ ଘର ତରଫରୁ ଓକିଲ ମହାପାତ୍ର ବାବୁ ଓ ପୁଅଘର ତରଫରୁ ଶଙ୍କର ମୁଣ୍ଡା ବାହାଘର ଆୟୋଜନ କରିବେ ।

କିଛି ସମୟ ଭିତରେ ବାହାଘରର ଜିନିଷପତ୍ର କିଣା ହୋଇ ଚାଲି ଆସିଲା । ବ୍ରାହ୍ମଣ, ବାରିକ, ନାହାକ ଆସି ପହଞ୍ଚିଗଲେ । ପୁଅ ଝିଅଙ୍କ ପାଇଁ ପୋଷାକ ପତ୍ର, ଫୁଲମାଳ ଧରି ଡାକ୍ତର ମିଶ୍ର ଆସି ପହଞ୍ଚିଲେ । ସହରର ସବୁ ବିଶିଷ୍ଟ ଲୋକମାନଙ୍କୁ ଫୋନ୍‌ଦ୍ୱାରା ନିମନ୍ତ୍ରଣ କରାଗଲା । ସାମ୍ବାଦିକମାନଙ୍କୁ ଖବର ଦିଆଗଲା ।

ସନ୍ଧ୍ୟା ବେଳକୁ ଭୋଜିଭାତର ଆୟୋଜନ ହେଲା । କିଏ କାହାର ବନ୍ଧୁ ବାନ୍ଧବ, କିଏ ସର୍ବସାଧାରଣ ଦର୍ଶକ, କିଏ ସରକାରୀ କର୍ମଚାରୀ କିଛି ବାରଣ ନାହିଁ । ସମସ୍ତେ ଭୋଜି କାମରେ ବ୍ୟସ୍ତ । ଲାଗୁଥାଏ– ସତେ ଯେମିତି ଗୋଟାଏ ସର୍ବସାଧାରଣ ମେଳା ଚାଲିଛି । ସମସ୍ତେ ନିଜ ନିଜର କାମ କରିବାରେ ବ୍ୟସ୍ତ ଥା'ନ୍ତି । ଆରକ୍ଷୀ ଅଧୀକ୍ଷକ ନୂଆ ଧୋତି ପଞ୍ଜାବୀ ପିନ୍ଧି ତାଙ୍କ ପତ୍ନୀଙ୍କ ସହିତ ଆସି ବାହାବେଦୀ ପାଖରେ ପହଞ୍ଚିଲେ । ତେଲିଙ୍ଗୀ ବାଦ୍ୟର ମଧୁର ସୁରରେ ଦରବାର ହଲ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟ ପରିସର ମୁଖରିତ ହୋଇ ଉଠିଲା । ଫଟୋଗ୍ରାଫର ଏବଂ ସାମ୍ବାଦିକମାନେ ବରକନ୍ୟାଙ୍କର ବିଭିନ୍ନ ପୋଜ୍‌ର ଫଟୋ ଉଠାଉଥା'ନ୍ତି । ଡାକ୍ତର ମିଶ୍ରଙ୍କ ସହିତ ଶ୍ରୀମତୀ ମିଶ୍ର ଏବଂ ସାନଝିଅ ହୀରଣ୍ୟ ପ୍ରଭା ନୂଆ ପୋଷାକ ପିନ୍ଧି ସେଇଠି ସବୁ କାର୍ଯ୍ୟକୁ ନିରବଦ୍ରଷ୍ଟା ହେଇ ବସିଥା'ନ୍ତି । ବରବାପା ସନିଆଁକୁ ନୂଆ ଧୋତି, ପଞ୍ଜାବୀ ବହୁତ ସୁନ୍ଦର ମାନୁଥିଲା । ସେ ତାଙ୍କ ପାଖରେ ବସି ଆନନ୍ଦାଶ୍ରୁ ଗଡ଼ାଉଥାଏ ।

ବ୍ରାହ୍ମଣ ନାହାକଙ୍କର ଯଥା–ରାବଣସ୍ୟ ମନ୍ଦୋଦରୀ, ଯଥା ରାମସ୍ୟ ସୀତା, ନଳସ୍ୟ ଦମୟନ୍ତୀ ଆଦି ମନ୍ତ୍ରଧ୍ୱନିରେ ବାହାଘର କାର୍ଯ୍ୟ ସମାପ୍ତ ହେଲା ।

ଝିଅଜ୍ୱୋଇଁଙ୍କୁ ଗାଡ଼ିରେ ବସାଇ ଡାକ୍ତର ମିଶ୍ର ନିଜ ବାସ ଭବନକୁ ନେଇଗଲେ । ସନିଆଁ, ଚନ୍ଦୁ ଓ ଶଙ୍କରମୁଣ୍ଡା ଆଉ ଗୋଟାଏ ଗାଡ଼ିରେ ବସି ଡାକ୍ତର ମିଶ୍ରଙ୍କ ଘରକୁ ଗଲେ । ସେଇଠି ସ୍ଥିର ହେଲା– ଭୁବନେଶ୍ୱର କୋଠାରେ ଝିଅଜ୍ୱୋଇଁ ଏବଂ ସମୁଦି ସନାତନ ସେଇଠି ରହିବେ । ଶ୍ରୀମତୀ ମିଶ୍ର ସୁବିଧା ଦେଖି ମାନସ ପାଖକୁ ଯାଇ କହିଲେ, 'ତମେ ମୋର ଜ୍ୱାଇଁ ନୁହଁ, ଆଜିଠାରୁ ପୁଅ ହେଲ । ମୋ ହସକୁରୀ ଜହ୍ନକୁ ଯେଉଁଠି ରଖୁଛ ରଖ, ତମର ଇଚ୍ଛା । ତା' ମୁହଁରେ କେବେ ଯେମିତି ଦୁଃଖର କାଳିମା ନ ଲାଗୁ । ତମେ ଦି'ଜଣ ସୁଖରେ ରହିଲେ, ଆମେ ସମସ୍ତେ ସୁଖରେ ରହିଲୁ ବୋଲି ଜାଣ ।'

ମାନସ ହସ ହସ ମୁହଁରେ ନିଜର ସମ୍ମତି ଜଣାଇଲା ।

ତା'ପରଦିନ ସବୁ ଖବର କାଗଜରେ ମାନସ ଓ ରତ୍ନପ୍ରଭାଙ୍କର ସାହସିକ କାର୍ଯ୍ୟ, ପ୍ରେମ, ତ୍ୟାଗ, ନିଷ୍ଠା ବିଷୟରେ ଅସଂଖ୍ୟ କାହାଣୀ ପ୍ରକାଶ ପାଇଲା । ପୁଲିସର ସାହସିକ କମ୍ବିଂ ଅପେରସନ୍‌ରେ ଆତ୍ମ ସମର୍ପଣ କରିଥିବା ମାଓବାଦୀ ସଭ୍ୟଙ୍କୁ କିଭଳି ଆରକ୍ଷୀ ଅଧୀକ୍ଷକ ବାହା କରେଇଲେ, ସେ ବିଷୟରେ ବିଶେଷ ବିବରଣୀ ସହ ଫଟୋ ପ୍ରକାଶ ପାଇଥିଲା । ସମସ୍ତେ ଜିଲ୍ଲା ପୁଲିସ ପ୍ରଶାସନକୁ ପ୍ରଶଂସା କରି ଆତ୍ମ ସନ୍ତୋଷ ଲାଭ କଲେ ।





## ଡକ୍ଟର କୃତ୍ତିବାସ ନାୟକଙ୍କ ପ୍ରକାଶିତ ପୁସ୍ତକ
## ୨୦୧୦ ସୁଦ୍ଧା ମୋଟ ସଂଖ୍ୟା-୯୪

**ସମାଲୋଚନା ଏବଂ ସନ୍ଦର୍ଭ(୩)**
୧) ଓଡ଼ିଆ ଶିଶୁଗନ୍ଥର ସ୍ୱରୂପ ଓ ବିକାଶ
୨) ପିଲାଙ୍କ ସାହିତ୍ୟର କଳା ଓ କୌଶଳ
୩) ଶ୍ରଦ୍ଧାକର ସାହିତ୍ୟ ପରିକ୍ରମା

**ଗଳ୍ପ ଓ ଲଳିତ ଗଳ୍ପ ସଂକଳନ (୩)**
୧) ସଦାନନ୍ଦ ବାବୁଙ୍କ ସଂସାର
୨) ଶୁଣିମା ହେଉ, ୩) ଟିମା ଫକୀର

**ଉପନ୍ୟାସ (୩)**
୧) ଶୁଭଲକ୍ଷ୍ମୀ (ଜାତୀୟ ପୁରସ୍କାରପ୍ରାପ୍ତ)
୨) କୁଳବୋହୂ, ୩) ହସକୁରୀ ଜହ୍ନ

**ଗୀତି କବିତା(୬)**
୧) ଆକାଶବାଣୀ-(ବିବିଧ ଗୀତି କବିତା)
୨) ପ୍ରୀତି ଅସରାଏ-(ଆଧୁନିକ ଗୀତି କବିତା)
୩) ଭକ୍ତି ଶତକ- (ଭକ୍ତି ଗୀତି କବିତା)
୪) ଉଡ଼ିଗଲେ ଗେଣ୍ଡାଳିଆ-(ପଲ୍ଲୀଗୀତ)
୫) ଗୀତି ଶତକ- (ଶିଶୁ ଗୀତ, ଦେଶ ବନ୍ଦନା)
୬) ପ୍ରୀତି ଶତକ-(ଆଧୁନିକ ଗୀତି କବିତା)

**ବିଜ୍ଞାନ(୨)**
୧) ସର୍ବଜ୍ଞ ମାନବ, ୨) ପୃଥିବୀର ସୃଷ୍ଟି ରହସ୍ୟ

**ସୂଚନା ସାହିତ୍ୟ(୯)**
୧) ଜ୍ଞାନ ସଂଗ୍ରହ, ୨) ଉତ୍କଳ ଦର୍ପଣ
୩) ଓଡ଼ିଶା ଟୁ ଡେ, ୪) ଆଜିର କୋରାପୁଟ
୫) କେନ୍ଦୁଝର ଦର୍ପଣ, ୫) ରାଉରକେଲା ଦର୍ପଣ
୬) ରାଉରକେଲା ଦର୍ପଣ (ଇଂ),
୭) ଢେଙ୍କାନାଳ ଦର୍ପଣ, ୮) ଓଡ଼ିଶାର ମୁଖ୍ୟମନ୍ତ୍ରୀ,
୯) ଓଡ଼ିଶାର ପଞ୍ଚ ମହାତ୍ମା, ୧୦) ଓଡ଼ିଶାର ପଞ୍ଚସଖା

**ଐତିହାସିକ ଗୀତିଗାଥା ଏବଂ କାହାଣୀ(୧୪)**
୧) ଓଡ଼ିଆ ଜାତିର ଲଢୁଆ ବୀର
୨) ଯିଏ ଦେଲେ ରକ୍ତ ଆମରି ପାଇଁ
୩) ସ୍ୱାଧୀନତା ସଂଗ୍ରାମରେ ଭାରତୀୟ ନାରୀ
୪) ସହିଦ ଗୁଚ୍ଛମାଳା, ୫) ଭାରତର ବୀର ସହିଦ
୬) ଭାରତର ନାରୀ ସହିଦ,
୭) ଉତ୍କଳର ବୀର ସହିଦ

**ନାଟକ, ଗୀତିନାଟ୍ୟ ଓ ଏକାଙ୍କିକା(୬)**
୧) ପ୍ରଥମ ସହିଦ-ଗୀତିନାଟ୍ୟ, ୨) ଆଖଣ୍ଡଳମଣି-(ଗୀତିନାଟ୍ୟ)
୩) ଆଖଣ୍ଡଳମଣି-(ବେତାର ନାଟକ)
୪) ବଣ ମୂଲକର ବିଚାର-(ଶିଶୁ ନାଟକ)
୫) ଆସ ନାଟକ କରିବା-(ଏକାଙ୍କିକା)
୬) ଓ.ଟା. ମହାସଙ୍ଘ-(ହାସ୍ୟରସାତ୍ମକ ନାଟକ)

**ସାଂସ୍କୃତିକ, ଆଧ୍ୟାତ୍ମିକ ଓ ସାମାଜିକ ଶିକ୍ଷା (୯)**
୧) କୁନି ମିନି ରଚନା
୨) ଓଡ଼ିଶାର ଦେବଦେବୀ-୧, ୩) ଓଡ଼ିଶାର ଦେବଦେବୀ-୨
୪) ଅଭିନବ ନୀତିଶିକ୍ଷା, ୫) ଜୀବନ ଭାଗବତ, ୬) ଅମୃତ ବଚନ
୭) ଦିବ୍ୟବାଣୀ, ୮) ମହିମା ଧର୍ମ ଓ ଦର୍ଶନ, ୯) କୈଶୋର

**ରୂପକ ସାହିତ୍ୟ(୨)**
୧) ଅନ୍ୟ ଏକ ନୀଳାଚଳ, ୨) ସକାଳ ହେବାର ବେଳ

**ପ୍ରୌଢ଼ ଶିକ୍ଷା(୧)**
୧) ଗପଟିଏ ଗୀତଟିଏ

**ଜୀବନୀ(୧୩)**
୧) ଇନ୍ଦିରା ଗାନ୍ଧୀ, ୨) ଉତ୍କଳ କେଶରୀ ମହତାବ
୩) ଉତ୍କଳର ପଞ୍ଚସଖା, ୪) ପ୍ରଭାବତୀ ଦେବୀ
୫) ରାଷ୍ଟ୍ରଗୁରୁ : ରାଧାକୃଷ୍ଣନ, ୬) ବିର୍ସାମୁଣ୍ଡା
୭) ବଜ୍ରପୁରୁଷ ବାଜପେୟୀ, ୮) ବାବା ସାହେବ ଆମ୍ବେଦକର
୯) କଳିଙ୍ଗ ସମ୍ରାଟ-ବିଜୁ ପଟ୍ଟନାୟକ

**ଶିଶୁ ସାହିତ୍ୟ : ଗଳ୍ପ, କବିତା ଓ ଉପନ୍ୟାସ(୧୬)**
୧) ବଢିଆ ମଜା-କାହାଣୀ, ୨) ପଞ୍ଚାମୃତ-କାହାଣୀ
୩) ସବୁଠାରୁ ଭଲଗପ, ୪) ଅସଲି ଯାଦୁ-ଉପନ୍ୟାସ
୫) ବଣଭୋଜି-ଉପନ୍ୟାସ, ୬) କିଏରେ ତୁହି କିଏ-କବିତା
୭) ଫୁଲ ସବୁ ଫୁଟିଲେ-କବିତା
୮) ନିଜ ଅଧିକାର ଜାଣିଛି ଯିଏ-କବିତା
୯) ଚନ୍ଦନ ଚକୁଳି-ଉପନ୍ୟାସ, ୧୦) ବରଦାନ-କବିତା
୧୧) ତୁମପାଇଁ ନୂଆ ଗପ, ୧୨) ନିଜ ଅଧିକାର ଜାଣିଛି ମୁହିଁ
୧୩) ମଜାଗପ, ୧୪) ଆସ ଆମେ ଗପ ପଢିବା
୧୫) ଗୀତରେ ଗୀତରେ ସାଧାରଣ ଜ୍ଞାନ
୧୬) ତୁମ ପାଇଁ ନୂଆ ଗୀତ

*ଯୋଗାଯୋଗ :* 'ଅରୁଣ ତରୁଣ', ୬-ଡି/୧୪୬୩,
ସେକ୍ଟର – ୧୦, ମର୍କତ ନଗର, କଟକ – ୧୪
ଫୋନ୍‌. ନଂ : ୯୯୩୭୬୪୩୫୦୮



ଶିଶୁ ସାହିତ୍ୟିକ ଓ ଗୀତିକାର ଭାବେ ବେଶ୍ ଜଣାଶୁଣା ନାମ - ଡକ୍ଟର କୃତ୍ତିବାସ ନାୟକ। ଜନ୍ମ ୦୨-୦୩-୧୯୫୫, ଗ୍ରାମ-ଏକତଳା, ରାଜକନିକା, କେନ୍ଦ୍ରାପଡ଼ା। ୨୦୧୦ ସୁଦ୍ଧା ତାଙ୍କର ୯୪ ଖଣ୍ଡ ପୁସ୍ତକ ପ୍ରକାଶ ପାଇଛି। ସେଥିମଧ୍ୟରୁ 'ବଣଭୋଜି' ଓ 'ଫୁଲ ସବୁ ଫୁଟିଲେ' ପୁସ୍ତକ ଦୁଇଟି ଜାତୀୟ ଶିଶୁ ସାହିତ୍ୟ ପୁରସ୍କାର ଲାଭ କରିଛି ଏବଂ 'ଶୁଭଲକ୍ଷ୍ମୀ' ଉପନ୍ୟାସ ଭାରତର ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ପୁରସ୍କୃତ ହୋଇଛି। ତାଙ୍କର ଚାରିଖଣ୍ଡ ଗୀତିକବିତା ପୁସ୍ତକ ବେଶ୍ ଲୋକପ୍ରିୟତା ହାସଲ କରିଛି। ସମ୍ପ୍ରତି ଡକ୍ଟର ନାୟକ ଆକାଶବାଣୀ କଟକ କେନ୍ଦ୍ରର ଜଣେ ବରିଷ୍ଠ ଅଧିକାରୀ ଭାବେ ଅବସ୍ଥାପିତ।


ISBN 81-87968-38-9
9 788187 968382